ଓଡ଼ିଶା ଶିକ୍ଷା ବିଭାଗ ଡିରେକ୍ଟର ମହୋଦୟଙ୍କ ୨୨।୬।୫୦ ତାରିଖର ନ୨ମ୍ବର
ନୋଟିସ୍‌ରେ ଷଷ୍ଠ ଓ ସପ୍ତମ ଶ୍ରେଣୀର ପାଠ୍ୟପୁସ୍ତକରୂପେ ନିର୍ବାଚିତ ।

# ଆମ ଭାରତ ଇତିହାସ

( ଷଷ୍ଠ ଓ ସପ୍ତମ ଶ୍ରେଣୀ ନିମନ୍ତେ )

ଲେଖିକା ଓ ଲେଖକ

**ମନୋରମା ମହାପାତ୍ର ଏମ୍. ଏ**
ଇତିହାସ ଅଧ୍ୟାପିକା, ରେଭେନ୍ସା କଲେଜ, କଟକ
ଓ
**ଶ୍ରୀ ନିରଞ୍ଜନ ମହାପାତ୍ର ବି ଏ ( ଅନର୍ସ ) ଡି. ଇଡି.**
ସହକାରୀ ଶିକ୍ଷକ, ରେଭେନ୍ସା କଲେଜିଏଟ୍ ସ୍କୁଲ, କଟକ

ଦ୍ୱିତୀୟ ମୁଦ୍ରଣ

ପ୍ରକାଶକ
**ଶ୍ରୀମତୀ ମଞ୍ଜୁଳମଞ୍ଜରୀ [illegible]**
ମହାପ୍ରସାଦ ବ୍ରଦର୍ସ
ପୋ: ଅ: ଗୃଦନାଗୌଳ, କଟକ
୧୯୫୦

ମୂଲ୍ୟ ଠ ୧୯ ଏକଟଙ୍କା ମାତ୍ର

## —ସୂଚୀ—

## ପ୍ରଥମ ଭାଗ

| ବିଷୟ | ପୃଷ୍ଠା |
|---|---|

ବିଷୟ

# ଆମ ଭାରତ ଇତିହାସ

## ପ୍ରଥମ ଭାଗ

### ସୂଚନା

ଆମ ଦେଶର ନାମ ଭାରତବର୍ଷ । ତାହା ପୃଥିବୀର ସବୁଠାରୁ ବଡ଼ ମହାଦେଶ ଏସିଆର ଗୋଟିଏ ବଡ଼ ଉପଦ୍ୱୀପ । ଆମ ଭାରତବର୍ଷର ଉତ୍ତରରେ ହିମାଳୟ ନାମକ ବିରାଟ ପର୍ବତଶ୍ରେଣୀ, ପୂର୍ବରେ ନାଗା, ଗାରୋ, ଖାସି ପ୍ରଭୃତି ପାହାଡ଼, ପଶ୍ଚିମରେ ହିନ୍ଦୁକୁଶ ଓ ସୁଲେମାନ ପ୍ରଭୃତି ପର୍ବତଶ୍ରେଣୀ, ପଶ୍ଚିମ ତଟର ଦକ୍ଷିଣ ଅଂଶରେ ଆରବସାଗର ଓ ପୂର୍ବତଟର ଦକ୍ଷିଣ ଅଂଶରେ ବଙ୍ଗୋପସାଗର ଓ ଦକ୍ଷିଣରେ ଭାରତ ମହାସାଗର ରହିଅଛି । ତେଣୁ ଶତ୍ରୁମାନେ ସହଜରେ ଭାରତକୁ ଆକ୍ରମଣ କରିପାରନ୍ତି ନାହିଁ । କିନ୍ତୁ ଭାରତର ପଶ୍ଚିମପଟରେ ଖାଇବାର, ବୋଲାନ ପ୍ରଭୃତି ଗିରିସଙ୍କଟ ବାଟେ ଶତ୍ରୁମାନେ ଏ ଦେଶକୁ ବାରମ୍ବାର ଆକ୍ରମଣ କରି ଧନ ସମ୍ପଦ ଲୁଟି କରି ନେଇଛନ୍ତି ଓ ଭାରତରେ ବସବାସ କରିଅଛନ୍ତି । ପରେ ସମୁଦ୍ରବାଟେ ଜାହାଜରେ ଆସି ବିଦେଶୀମାନେ ଆମ ଦେଶକୁ ଆକ୍ରମଣ କରିଥିଲେ । ଆମ ଦେଶ ପ୍ରକୃତି ଦ୍ୱାରା ସୁରକ୍ଷିତ ହୋଇଥିବାରୁ ବହୁ ପରିମାଣରେ ଅନ୍ୟ ଦେଶମାନଙ୍କ ସଂସ୍ପର୍ଶରେ ଆସିନାହିଁ । ତେଣୁ ଏ ଦେଶର ସଭ୍ୟତା ଅନ୍ୟ ଦେଶର ସଭ୍ୟତାଠାରୁ କେତେକ ପରିମାଣରେ ପୃଥକ୍ । କିନ୍ତୁ ବିଦେଶୀମାନଙ୍କର ବାରମ୍ବାର ଆକ୍ରମଣ ଫଳରେ ନାନା ଜାତିର ସଭ୍ୟତାର ଚିହ୍ନ ଆମ ଦେଶରେ ଦେଖିବାକୁ ମିଳେ । ଭାରତର

ଉତ୍ତର ପଶ୍ଚିମ ଗିରିସଙ୍କଟମାନଙ୍କର ଯେଉଁ ପ୍ରଦେଶ ଯେତେ ନିକଟ ତା'ର ସଭ୍ୟତା ସେତେ ମିଶ୍ର ।

ଭାରତବର୍ଷର ମଝିରେ ବିନ୍ଧ୍ୟ ପର୍ବତ ରହି ଭାରତକୁ ଦୁଇ ଭାଗରେ ବିଭକ୍ତ କରୁଅଛି । ଉତ୍ତର ଅଂଶଟି ଉତ୍ତର ଭାରତ ଓ ଦକ୍ଷିଣ ଅଂଶଟିର ନାମ ଦାକ୍ଷିଣାତ୍ୟ । ସିନ୍ଧୁ, ଗଙ୍ଗା, ବ୍ରହ୍ମପୁତ୍ର ପ୍ରଭୃତି ବଡ଼ ବଡ଼ ନଈ ହିମାଳୟରୁ ବାହାରି ଉତ୍ତର ଭାରତ ଦେଇ ବହି ଯାଇଅଛନ୍ତି । ଦାକ୍ଷିଣାତ୍ୟର ପୂର୍ବରେ ପୂର୍ବଘାଟ ଓ ପଶ୍ଚିମରେ ପଶ୍ଚିମଘାଟ ପର୍ବତମାଳା ରହିଅଛି । ଦାକ୍ଷିଣାତ୍ୟର ଉପକୂଳ ଅଞ୍ଚଳକୁ ଛାଡ଼ିଦେଲେ ଆଉ ସବୁ ଅଞ୍ଚଳ କଙ୍କରମୟ । ତେଣୁ ଉତ୍ତର ଭାରତ ଉର୍ବର ଓ ଦାକ୍ଷିଣାତ୍ୟ ସେତେ ଉର୍ବର ନୁହେଁ । ଶତ୍ରୁମାନେ ମଧ୍ୟ ଏହି କାରଣରୁ ଦାକ୍ଷିଣାତ୍ୟକୁ ବହୁବାର ଆକ୍ରମଣ କରି ନାହାନ୍ତି । ତେଣୁ ଦାକ୍ଷିଣାତ୍ୟର ସଭ୍ୟତା କେତେକ ପରିମାଣରେ ଉତ୍ତର ଭାରତର ସଭ୍ୟତାଠାରୁ ଭିନ୍ନ ।

ଆମ ପ୍ରଦେଶର ନାମ ଓଡ଼ିଶା । ପୂର୍ବେ ଏହାକୁ କଳିଙ୍ଗ ଓ ଉତ୍କଳ କହୁଥିଲେ । ଆଗେ ଏହା ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ଓ ପୂର୍ବରେ ବଙ୍ଗୋପସାଗରଠାରୁ ପଶ୍ଚିମରେ ରାୟପୁର ଜିଲ୍ଲା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ସିଂହଭୂମ, ଷଡ଼େଇକଳା, ଖରସୁଆଁ, ବାଙ୍କୁଡ଼ା, ବସ୍ତର, ଫୁଲଝର, ମେଦିନୀପୁର, ବିଶାଖାପାଟଣା ପ୍ରଭୃତି ଅଞ୍ଚଳ ଆମ ଓଡ଼ିଶା ଭିତରେ ଥିଲା । ବିଶାଳ ଓଡ଼ିଶା ପ୍ରଦେଶ କାଳକ୍ରମେ ସଙ୍କୁଚିତ ହୋଇଅଛି । ଓଡ଼ିଶା ଦାକ୍ଷିଣାତ୍ୟର ପ୍ରାକୃତିକ ବିଭାଗରେ ଅବସ୍ଥିତ ଓ ଏହାର ଉତ୍ତର ସୀମା ଉତ୍ତର ଭାରତ ସହିତ ସଂଯୁକ୍ତ । ତେଣୁ ଉତ୍ତର ଭାରତ ଓ ଦାକ୍ଷିଣାତ୍ୟ ଉଭୟର ସଭ୍ୟତା ଏଠାରେ ମିଶି ରହିଛି ।

---

# ପ୍ରଥମ ଅଧ୍ୟାୟ

## କେଶରୀ ବଂଶ

**ଜନ୍ମେଜୟ** (ଖ୍ରୀ: ୬୯୦—ଖ୍ରୀ: ୭୧୨)—ସପ୍ତମ ଶତାବ୍ଦୀରେ ଓଡ଼ିଶାର ପଶ୍ଚିମରେ ଥିବା ମହାକୋଶଳର ରାଜା ବାଲାର୍ଜୁନ କଲଚୁରି ରାଜାଙ୍କ ଦ୍ୱାରା ତଡ଼ାଖାଇ ତ୍ରିକଳିଙ୍ଗରେ ନୂତନ ରାଜ୍ୟ ସ୍ଥାପନ କରିଥିଲେ । ବର୍ତ୍ତମାନ ଓଡ଼ିଶାର ପଶ୍ଚିମାଂଶ, ମଧ୍ୟପ୍ରଦେଶର ପୂର୍ବାଂଶ ଓ ଅନ୍ଧ୍ର ପ୍ରଦେଶର ଉତ୍ତରାଂଶକୁ ତ୍ରିକଳିଙ୍ଗ କୁହାଯାଉଥିଲା । ବାଲାର୍ଜୁନ ସୋମବଂଶର ରାଜା ଓ ତାଙ୍କର 'ମହାଶିବଗୁପ୍ତ' ଉପାଧି ଥିଲା । ତାଙ୍କର ନାତି ଜନ୍ମେଜୟ 'ମହାଭବଗୁପ୍ତ' ଉପାଧି ଧାରଣ କରିଥିଲେ ଓ ଓଡ଼ିଶାର ଉପକୂଳର ମଧ୍ୟଭାଗ ଜୟ କରିଥିଲେ । କଟକ ଜିଲ୍ଲା ତାଙ୍କ ରାଜ୍ୟ ମଧ୍ୟରେ ଥିଲା ଓ ସେ ଚୌଦ୍ୱାରରେ ଗୋଟିଏ ଦୁର୍ଗ ନିର୍ମାଣ କରି ସେଠାରେ ନିଜର ରାଜଧାନୀ ବସାଇଥିଲେ । ସେ ତାଳଯୋଡ଼ାର ଅଗ୍ରାହାଟରେ ଗୋଟିଏ ଯଜ୍ଞ କରିଥିଲେ ଓ ବ୍ରାହ୍ମଣମାନଙ୍କୁ ବହୁତ ଗ୍ରାମ ଓ ଭୂମିବାଡ଼ି ଦାନ କରିଥିଲେ । ତାଙ୍କର 'ମହାଭବଗୁପ୍ତ' ଉପାଧି ଓ ଏହୁ ଦାନ ବିଷୟ ସେ ତମ୍ବାପଟାମାନଙ୍କରେ ଲେଖାଇଥିଲେ । ବର୍ତ୍ତମାନ ମାଟି ତଳୁ ମିଳୁଥିବା ତମ୍ବାପଟାରୁ ଜଣାଯାଏ ଯେ ସେ ସମ୍ବଲପୁର, ସୋନପୁର, ପାଟନା, ବେଢ଼ାଖୋଲ ଅଞ୍ଚଳରେ ବେଶୀ ଦାନ କରିଥିଲେ ।

**ପ୍ରଥମ ଯଯାତି** (ଖ୍ରୀ: ୭୧୨—ଖ୍ରୀ: ୭୪୪) :— ଜନ୍ମେଜୟଙ୍କ ପରେ ଦୁଇଜଣ ଯଯାତି ରାଜପଣ କରିବାର ଜଣାଯାଏ । ପ୍ରଥମ ଯଯାତି ବିନୀତପୁରରେ ରାଜଧାନୀ ସ୍ଥାପନ କରି ତାକୁ ନିଜ ନାମାନୁସାରେ ଯଯାତିନଗର ରଖିଥିଲେ । ବର୍ତ୍ତମାନର ସୋନପୁରରେ ଯଯାତିନଗର ଅବସ୍ଥିତ ଥିଲା ବୋଲି ଅନୁମାନ କରାଯାଏ । ତାଙ୍କର 'ମହାଶିବଗୁପ୍ତ' ଉପାଧି ଥିଲା ।

**ଦ୍ୱିତୀୟ ଯଯାତି** ( ଖ୍ରୀ: ୭୯୫—ଖ୍ରୀ: ୮୪୦ ) :—ଦ୍ୱିତୀୟ ଯଯାତିଙ୍କଠାରୁ ପ୍ରକୃତରେ କେଶରୀବଂଶ ସ୍ଥାପିତ ହୋଇଥିଲା । କଥିତ ଅଛି, ଯଯାତି ନିଜ ରାଜ୍ୟରୁ ପଳାଇଆସି ଯାଜପୁରଠାରେ ବିରଜା ଠାକୁରାଣୀଙ୍କୁ ପୂଜାକରି ଉତ୍କଳ ରାଜକନ୍ୟାଙ୍କୁ ବିବାହ କଲେ ଓ କଳିଙ୍ଗ, କଙ୍ଗୋଦ ଓ ଉତ୍କଳରାଜ୍ୟ ଲାଭ କରିଥିଲେ । ତେଣୁ ବିରଜାଙ୍କ ବାହନ କେଶରୀ ନାମ ଅନୁସାରେ ସେ ନିଜ ବଂଶକୁ କେଶରୀବଂଶ ନାମ ଦେଲେ । ସେହି ଦିନଠାରୁ ସୋମବଂଶୀୟ ରାଜାମାନେ କେଶରୀବଂଶୀୟ ରାଜା ବୋଲି ପରିଚିତ ହେଲେ ।

ସେତେବେଳେ ଗୋଦାବରୀଠାରୁ ବଂଶଧାରା ନଦୀ ପର୍ଯ୍ୟନ୍ତ ଅଞ୍ଚଳକୁ କଳିଙ୍ଗ, ବଂଶଧାରାଠାରୁ ଋଷିକୂଲ୍ୟା ନଦୀ ପର୍ଯ୍ୟନ୍ତ ଅଞ୍ଚଳକୁ କଙ୍ଗୋଦ ବା ମଧ୍ୟକଳିଙ୍ଗ ଓ ଋଷିକୂଲ୍ୟାଠାରୁ ଗଙ୍ଗା ପର୍ଯ୍ୟନ୍ତ ଅଞ୍ଚଳକୁ ଉତ୍ତର କଳିଙ୍ଗ ବା ଉତ୍କଳ କୁହାଯାଉଥିଲା । ଏହି ତିନୋଟି ଅଞ୍ଚଳ ପାଇଲା ପରେ ଯଯାତି ଗୌଡ଼ ( ଉତ୍ତର ବଙ୍ଗ ), ରାଢ଼ ( ପଶ୍ଚିମ ବଙ୍ଗ ) ଅଧିକାର କରି ରାଢ଼ ଓ ଗୌଡ଼ ବିଜେତା ବୋଲାଇଥିଲେ । ଏହାଛଡ଼ା ସେ କର୍ଣ୍ଣାଟ, ଲାଟ ଓ ଗୁର୍ଜର ରାଜ୍ୟମାନ ଜୟ କରିଥିଲେ । ସେ ବ୍ରାହ୍ମଣ୍ୟଧର୍ମର ଉନ୍ନତି ପାଇଁ କାନ୍ୟକୁବ୍‌ଜରୁ ଦଶ ହଜାର ଭଲ ବ୍ରାହ୍ମଣ ଅଣାଇ ସେମାନଙ୍କୁ ବହୁତ ଦାନ କରିଥିଲେ । ଏହି ବ୍ରାହ୍ମଣମାନେ ଅଧୁନିକ ଶାସନୀ ବ୍ରାହ୍ମଣ ଓ ଅନ୍ୟତ୍ର ଥିବା ବ୍ରାହ୍ମଣମାନେ ମାସ୍ତାନ ପ୍ରଭୃତି ବ୍ରାହ୍ମଣ ଅଟନ୍ତି । ସେ ବୈତରଣୀ କୂଳରେ ଗୋଟିଏ ଯଜ୍ଞ କରିଥିଲେ । ସେହି ସ୍ଥାନ ଯଜ୍ଞପୁର ଓ ପରେ ଯାଜପୁର ହେଲା । ଯାଜପୁରର ଦଶାଶ୍ୱମେଧ ଯଜ୍ଞ ଘାଟ ତାଙ୍କର କୀର୍ତ୍ତି । ତାହା ହିନ୍ଦୁମାନଙ୍କର ଗୋଟିଏ ତୀର୍ଥସ୍ଥାନ । ଯଯାତି ଯାଜପୁରରେ ଗୋଟିଏ ରାଜପ୍ରାସାଦ ନିର୍ମାଣ କରାଇଥିଲେ । ପୁରୀର ଜଗନ୍ନାଥ ମନ୍ଦିର ପୁରୁଣା ହୋଇଯାଇଥିବାରୁ ସେ ସେଠାରେ ଗୋଟିଏ ନୂତନ ମନ୍ଦିର

ନିର୍ମାଣ କରାଇଥିଲେ । କିନ୍ତୁ ବର୍ତ୍ତମାନର ପୁରୀ ମନ୍ଦିର ସେହି ମନ୍ଦିର ନୁହେଁ । ସେ ଭୁବନେଶ୍ୱରରେ ପ୍ରସିଦ୍ଧ ଲିଙ୍ଗରାଜ ମନ୍ଦିର ନିର୍ମାଣକାର୍ଯ୍ୟ ଆରମ୍ଭ କରିଥିଲେ । ସେ ଖ୍ରୀ: ୮୪୦ରେ ପ୍ରାଣତ୍ୟାଗ କରିଥିଲେ।

**ଲଲାଟେନ୍ଦୁ କେଶରୀ** :—ଯଯାତିକେଶରୀଙ୍କ ପରେ ଉଦ୍ୟୋତ କେଶରୀ ବା ଲଲାଟେନ୍ଦୁ କେଶରୀ ଓଡ଼ିଶାର ରାଜା ହେଲେ । ସେ ବହୁ



ସମୟରେ ଗୌଡ଼ରାଜାମାନଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ରହୁଥିଲେ । ଉତ୍ତର ଭୁଇଅଳମାନଙ୍କୁ ତ୍ରିକଳିଙ୍ଗରେ ସାମନ୍ତରାଜାରୂପେ ବସାଇଥିଲେ ମଧ୍ୟ

ସେ ତ୍ରିକଳିଙ୍ଗାଧିପତି ବୋଲାଉଥିଲେ । ସେ ଲିଙ୍ଗରାଜ ମନ୍ଦିରର ନିର୍ମାଣକାର୍ଯ୍ୟ ଶେଷ କରାଇଥିଲେ । ଏହି ମନ୍ଦିରର ଉଚ୍ଚତା ୧୬୦ ଫୁଟ ଏବଂ ବେଢ଼ାର ଦୈର୍ଘ୍ୟ ୫୨୦ ଫୁଟ ଓ ପ୍ରସ୍ଥ ୪୬୫ ଫୁଟ । ଏହାର କ୍ଷେତ୍ରଫଳ ସାଢ଼େ ଚାରି ଏକର । ଲିଙ୍ଗରାଜ ମନ୍ଦିରର ବେଢ଼ା ଭିତରେ ୬୦ରୁ ୭୦ ମନ୍ଦିର ଓ ବେଢ଼ା ବାହାରେ ଅସଂଖ୍ୟ ମନ୍ଦିର ଅଛି । ଏହି ମନ୍ଦିରଗୁଡ଼ିକର ଚିତ୍ରକଳା ଅତି ସୁନ୍ଦର ଓ ଭାରତପ୍ରସିଦ୍ଧ । ଲଲାଟେନ୍ଦୁ ଭୁବନେଶ୍ୱରରେ ଗୋଟିଏ ସହର ବସାଇ ସେଠାରେ ନିଜର ରାଜଧାନୀ ସ୍ଥାପନ କରିଥିଲେ ।

ଏହାଙ୍କ ପରେ ଏହି ବଂଶର ଅନେକ ରାଜା ରାଜପଣ କରିଥିଲେ । ଗଙ୍ଗାବଂଶର ରାଜା ଚୋଳଗଙ୍ଗଦେବ କେଶରୀବଂଶର ଶେଷ ରାଜା ସୁବର୍ଣ୍ଣ କେଶରୀଙ୍କୁ ପରାସ୍ତ କରି ଓଡ଼ିଶା ଅଧିକାର କଲେ ।

କ୯ କେଶରୀବଂଶର ରାଜାମାନେ ବଡ଼ ପରାକ୍ରମୀ ଥିଲେ । ସେମାନଙ୍କ ସମୟରେ ଓଡ଼ିଶା ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ, ପୂର୍ବରେ ବଙ୍ଗୋପସାଗରଠାରୁ ପଶ୍ଚିମରେ ରାୟପୁର ପର୍ଯ୍ୟନ୍ତ ବିସ୍ତୃତ ଥିଲା । ସେ ସମୟରେ ବୌଦ୍ଧଧର୍ମର ଅବନତି ଓ ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନ ହୋଇଥିଲା । ତେଣୁ ସେମାନେ ଓଡ଼ିଶାକୁ ବହୁତ ବ୍ରାହ୍ମଣ ଅଣାଇ ବହୁ ଯଜ୍ଞ କରାଇଥିଲେ । ସେମାନେ ଶୈବ ଥିବାରୁ ଭୁବନେଶ୍ୱରକୁ ଶିବକ୍ଷେତ୍ରରେ ପରିଣତ କରାଇଥିଲେ । ସେମାନେ ଉତ୍କଳର ନାନାସ୍ଥାନରେ ଚିତ୍ରକଳା-ଶୋଭିତ ଅନେକ ମନ୍ଦିର ନିର୍ମାଣ କରାଇଥିଲେ । ସେମାନଙ୍କ ଅମଳରେ କଟକନଗର ସ୍ଥାପିତ ହୋଇଥିଲା ଓ ମହାନଦୀ ଓ କାଠଯୋଡ଼ିରେ ସୁଦୃଢ଼ ପଥରବନ୍ଧ ନିର୍ମିତ ହୋଇଥିଲା । ତୋରଣ ପରିପୂର୍ଣ୍ଣ ଅଠରନଳା ଏହି ବଂଶର କୀର୍ତ୍ତି ।

---

# ଦ୍ୱିତୀୟ ଅଧ୍ୟାୟ

## ରାଜପୁତ ଜାତି

ଅଧୁନିକ ରାଜପୁତାନାର ଲୋକମାନଙ୍କୁ ରାଜପୁତ ବୋଲଯାଏ । ରାଜପୁତ ଶବ୍ଦର ଅର୍ଥ ରାଜପୁତ୍ର । ରାଜପୁତାନାରେ ରାଜା ପ୍ରଜା ସମସ୍ତେ ନିଜକୁ ରାଜପୁତ୍ର ବୋଲି ପରିଚୟ ଦିଅନ୍ତି । ସେମାନେ ବୀର, ସାହସୀ, ଯୋଦ୍ଧା, ସ୍ୱଦେଶବତ୍ସଳ, ସଦାଗ୍ରସ୍ତ, ନ୍ୟାୟବାନ୍ ଓ ବଳବାନ୍ । ରାଜପୁତ ରମଣୀମାନେ ସତୀତ୍ୱ ଓ ଦେଶର ସ୍ୱାଧୀନତାକୁ ଖୁବ୍ ବଡ଼ ମନେ କରନ୍ତି । ସେମାନେ ବୀର ଓ ଶତ୍ରୁ ହାତରେ ପଡ଼ିବାଠାରୁ ନିଆଁରେ ଡେଇଁ ପୋଡ଼ି ହୋଇ ମରିବାକୁ (ଜହର ବ୍ରତକୁ) ଅଧିକ ପସନ୍ଦ କରନ୍ତି ।

ରାଜପୁତମାନେ ସାଧାରଣତଃ ତିନି ବଂଶରେ ବିଭକ୍ତ । ଯେଉଁମାନେ ରାମଚନ୍ଦ୍ରଙ୍କ ବଂଶରେ ଜନ୍ମ ବୋଲି କହନ୍ତି ସେମାନେ ସୂର୍ଯ୍ୟବଂଶୀୟ ଓ ଯେଉଁମାନେ ଯୁଧିଷ୍ଠିରଙ୍କ ବଂଶରେ ଜନ୍ମ ବୋଲି କହନ୍ତି ସେମାନେ ଚନ୍ଦ୍ରବଂଶୀୟ ରାଜପୁତ । ଶକ, ହୂନ ପ୍ରଭୃତି ଯେଉଁ ବିଦେଶୀୟ ଆକ୍ରମଣକାରୀଗଣ ଏଣିକପରେ ହିନ୍ଦୁଧର୍ମ ଗ୍ରହଣକରି ରାଜପୁତ ହେଲେ ସେମାନେ ଅଗ୍ନିବଂଶୀୟ ।

ଗୁର୍ଜର ପ୍ରତିହାର, ତୋମାର, ପାରମାର, ଚୌହାନ, ଚନ୍ଦେଲ, ରାଠୋର, ଶିଶୋଦୀୟ, ହୋଲ୍କି ପ୍ରଭୃତି ରାଜପୁତବଂଶ ଭାରତରେ ଥିଲେ । ଏହି ସମୟରେ ମୁସଲମାନମାନେ ଭାରତ ଆକ୍ରମଣ କରି ଲୋକମାନଙ୍କୁ ତାଙ୍କ ଧର୍ମରେ ଦୀକ୍ଷିତ କରାଉଥିଲେ । ରାଜପୁତମାନେ ହିନ୍ଦୁଧର୍ମ ରକ୍ଷା କରିବା ପାଇଁ ପ୍ରାଣପଣେ ଚେଷ୍ଟା କରି ବହୁତ ପ୍ରାଣବଳି ଦେଉଥିଲେ । ସେହିହେତୁରୁ ରାଜପୁତମାନେ ଏକ ବୀରଜାତିରେ ପରିଣତ ହୋଇଥିଲେ ।

**ଗୁର୍ଜ୍ଜର ପ୍ରତିହାର** :—ପ୍ରଥମରୁ ଗୁର୍ଜର ପ୍ରତିହାରମାନଙ୍କର ରାଜ୍ୟ ଶତଦ୍ରୁଠାରୁ ଆରାବଳୀ ମଧ୍ୟରେ ସୀମାବଦ୍ଧ ଥିଲା । ସେମାନେ

ପରାକ୍ରମୀ ହୋଇ ନିଜରାଜ୍ୟକୁ ପୂର୍ବପଞ୍ଜାବରୁ ବଙ୍ଗଦେଶ ଓ ହିମାଳୟରୁ ନର୍ମଦା ପର୍ଯ୍ୟନ୍ତ ବିସ୍ତାର କରିଥିଲେ । ପାଳବଂଶ ଓ ରାଷ୍ଟ୍ରକୂଟବଂଶର ରାଜାମାନଙ୍କ ସହିତ ସେମାନେ ବହୁ ସମୟ ଯୁଦ୍ଧ କରି ଦୁର୍ବଳ ହେବାରୁ ତୋମାର, ଚୌହାନ ଓ ରାଠୋରମାନେ ଶକ୍ତିଶାଳୀ ହେଲେ ।

**ତୋମାର** :—ତୋମାର ବଂଶର ରାଜପୁତମାନେ ଭଙ୍ଗା ଇନ୍ଦ୍ରପ୍ରସ୍ଥ (ଅନଙ୍ଗ)କୁ ପୁନର୍ବାର ତୋଳାଇଥିବାରୁ ଅନଙ୍ଗପାଳ ଉପାଧି ଧାରଣ କରିଥିଲେ । ଏହି ସ୍ଥାନ ଭାରତବର୍ଷର ଦେହଲୀ ( ଦ୍ୱାରଦେଶ ) ପରି ଥିବାରୁ ତାହାର ନାମ ଦିଲ୍ଲୀ ହୋଇଥିଲା । ଏହି ସମୟରେ **ରାଠୋରମାନେ** କନୌଜରେ ଓ **ଚୌହାନମାନେ** ଅଜମୀରରେ ରାଜତ୍ୱ କରୁଥିଲେ । ଦିଲ୍ଲୀର ଶେଷ ଅନଙ୍ଗପାଳଙ୍କର ବଡ଼ ଝିଅ କନୌଜର ରାଠୋର ରାଜାଙ୍କୁ ଓ ସାନ ଝିଅ ଅଜମୀର ଚୌହାନ ରାଜାଙ୍କୁ ବିବାହ କରିଥିଲେ । ତାଙ୍କର ପୁଅ ନ ଥିଲା । ତାଙ୍କ ପରେ ବଡ଼ ଝିଅର ପୁଅ ରାଠୋର ଜୟଚନ୍ଦ୍ର ଦିଲ୍ଲୀ ପାଇବେ ବୋଲି ଆଶା କରିଥିଲେ । କିନ୍ତୁ ଶେଷ ଅନଙ୍ଗପାଳ ସାନ ଝିଅର ପୁଅ ଚୌହାନ ପୃଥ୍ୱୀରାଜଙ୍କୁ ସିଂହାସନ ଦେଇଗଲେ । ଫଳରେ ଉଭୟଙ୍କ ମଧ୍ୟରେ ବିବାଦ ହେଲା, ପୃଥ୍ୱୀରାଜ ମଲେ ଓ ଭାରତର ସ୍ୱାଧୀନତା ଲୋପ ପାଇଲା ।

**ଶିଶୋଦୀୟ** :—ଏମାନେ ରାଣା ଉପାଧି ଧାରଣ କରି ମିବାରରେ ରାଜତ୍ୱ କରୁଥିଲେ । ସେମାନଙ୍କର ରାଜଧାନୀ ଚିତୋର ଥିଲା । ସେମାନେ ହିନ୍ଦୁଧର୍ମ ଓ ସ୍ତ୍ରୀମାନଙ୍କର ସତୀତ୍ୱ ରକ୍ଷା କରିବାପାଇଁ ମୁସଲମାନମାନଙ୍କ ସହିତ ଅଧିକ ଲଢ଼େଇ କରିଥିଲେ ।

**ଚନ୍ଦେଲ** :—ଚନ୍ଦେଲମାନେ ବୁନ୍ଦେଲଖଣ୍ଡରେ ରାଜପଣ କରୁଥିଲେ । ଗଡ଼ମଣ୍ଡଳ ସେମାନଙ୍କର ରାଜଧାନୀ ଥିଲା ।

**ପାରମାର** :—ଏମାନେ ମାଳବରେ ରାଜତ୍ୱ କରୁଥିଲେ । ଉଜ୍ଜୟିନୀ ସେମାନଙ୍କର ରାଜଧାନୀ ଥିଲା । ସେହି ବଂଶର ପ୍ରଧାନ ରାଜା ଭୋଜ ବୀର ଓ ପଣ୍ଡିତ ଥିଲେ । ସେ **ସରସ୍ୱତୀକଣ୍ଠାଭରଣ** ବୋଲି ଗୋଟିଏ ସଂସ୍କୃତ କଲେଜ ବସାଇଥିଲେ । ପରେ ମୁସଲମାନମାନେ ତାହା ଭାଙ୍ଗି ଦେଇଥିଲେ ।

**ପଲ୍ଲବ** :—ଚତୁର୍ଥ ଶତାବ୍ଦୀରୁ ପଲ୍ଲବମାନେ ମାନ୍ଦ୍ରାଜରେ ଅବସ୍ଥିତ ତାମିଲ ରାଜ୍ୟରେ ରାଜପଣ କରୁଥିଲେ । କାଞ୍ଚି ବା କଞ୍ଜିଭେରମ୍ ଏମାନଙ୍କର ରାଜଧାନୀ ଥିଲା । ସେମାନେ ଗଙ୍ଗାବଂଶ ଓ ଚାଲୁକ୍ୟ ରାଜାମାନଙ୍କ ସହିତ ବହୁ ସମୟ ଯୁଦ୍ଧ କରୁଥିଲେ । ଏହି ବଂଶର ଶ୍ରେଷ୍ଠରାଜା ନରସିଂହ ବର୍ମନ ଦ୍ୱିତୀୟ ପୁଲକେଶୀଙ୍କୁ ଯୁଦ୍ଧରେ ନିହତ କରିଥିଲେ । ପଲ୍ଲବମାନେ କାଞ୍ଚି ଓ ମଦୁରାରେ ଭୁବନେଶ୍ୱର ଓ ପୁରୀ ମନ୍ଦିର ପରି ପ୍ରସିଦ୍ଧ ସୂକ୍ଷ୍ମକଳାମଣ୍ଡିତ ମନ୍ଦିର ଓ ଗୁମ୍ଫାମାନ ନିର୍ମାଣ କରାଇଥିଲେ । ସେଗୁଡ଼ିକ ବର୍ତ୍ତମାନ ଅଛି । ନବମ ଶତାବ୍ଦୀର ମଧ୍ୟଭାଗରେ ଚୋଳମାନେ ପଲ୍ଲବ ରାଜ୍ୟ ଅଧିକାର କରିଥିଲେ ।

**ଚାଲୁକ୍ୟ** :—ଚାଲୁକ୍ୟମାନେ ମହାରାଷ୍ଟ୍ରରେ ସପ୍ତମ ଶତାବ୍ଦୀର ମଧ୍ୟଭାଗରୁ ଶହେ ବର୍ଷ ପର୍ଯ୍ୟନ୍ତ ରାଜପଣ କରିଥିଲେ । ତାଙ୍କର ରାଜ୍ୟ ଅଧୁନିକ ବମ୍ବେ ପ୍ରଦେଶରେ ଅବସ୍ଥିତ ଥିଲା । ବାତାପିରେ ତାଙ୍କର ରାଜଧାନୀ ଥିଲା । ତାହା ବିଜାପୁର ରାଜ୍ୟର ବାଦାମୀ ବୋଲି ଅନୁମାନ କରାଯାଏ । ଏହି ବଂଶର ଶ୍ରେଷ୍ଠରାଜା ଦ୍ୱିତୀୟ ପୁଲକେଶୀ ହର୍ଷବର୍ଦ୍ଧନଙ୍କୁ ପରାସ୍ତ କରିଥିଲେ । ପାରସ୍ୟର ରାଜା ତାଙ୍କ ସଭାକୁ ଦୂତ ପଠାଇଥିଲେ । ହୁଏନ୍‌ସାଂ ତାଙ୍କ ରାଜ୍ୟ ବୁଲି ତାଙ୍କୁ ବହୁତ ପ୍ରଶଂସା କରିଥିଲେ । ଏହି ସମୟରେ ତାଙ୍କ ରାଜ୍ୟରେ **ବୌଦ୍ଧଧର୍ମର ପତନ ଓ ହିନ୍ଦୁଧର୍ମର ଉତ୍ଥାନ** ହୋଇଥିଲା ।

## ଅନୁଶୀଳନୀ

୧ । ନିମ୍ନଲିଖିତ ବାକ୍ୟରେ ଶୂନ୍ୟସ୍ଥାନଗୁଡ଼ିକ ଉପଯୁକ୍ତ ଐତିହାସିକ ଶବ୍ଦମାନଙ୍କଦ୍ୱାରା ପୂର୍ଣ୍ଣ କର :—

(କ) —ଚୌଦ୍ୱାର ଦୁର୍ଗ ନିର୍ମାଣ କରିଥିଲେ ।

(ଖ) ଦଶାଶ୍ୱମେଧ ଘାଟ—ନଦୀକୂଳରେ ଓ ତାହା—କୀର୍ତ୍ତି ।

(ଗ) —ଲିଙ୍ଗରାଜ ମନ୍ଦିର ନିର୍ମାଣକାର୍ଯ୍ୟ ଆରମ୍ଭ କରିଥିଲେ ଓ—ଲିଙ୍ଗରାଜ ମନ୍ଦିର ନିର୍ମାଣ କାର୍ଯ୍ୟ ଶେଷ କରିଥିଲେ ।

(ଘ) ଜନ୍ମେଜୟଙ୍କର—ଉପାଧି ଥିଲା ।

୨ ।(କ) ଉତ୍କଳ, କଳିଙ୍ଗ, କଙ୍ଗୋଦ ଓ ତ୍ରିକଳିଙ୍ଗ ମଧ୍ୟରେ ପ୍ରଭେଦ କଣ ?

(ଖ) ଯଯାତିଙ୍କର ଉତ୍କଳ, କଳିଙ୍ଗ ଓ କଙ୍ଗୋଦ ଲାଭ କରିବା ବିଷୟରେ କି ଗଳ୍ପ ପ୍ରଚଳିତ ଅଛି ?

(ଗ) କେଶରୀ ବଂଶର ରାଜାମାନଙ୍କ ସମୟରେ ଓଡ଼ିଶାର ସୀମା ନିର୍ଦ୍ଦେଶ କର ।

(ଘ) ଭୁବନେଶ୍ୱର ମନ୍ଦିରର ଉଚ୍ଚତା କେତେ ଫୁଟ ?

୩ । ବନ୍ଧନୀ ମଧ୍ୟରୁ ଉପଯୁକ୍ତ ଶବ୍ଦ ବାଛି ଶୂନ୍ୟସ୍ଥାନ ପୂରଣ କର :—

(କ) —ସିବାରରେ ରାଜପଣ କରୁଥିଲେ । [ ଚୌହାନ, ଚାଲୁକ୍ୟ, ପଲ୍ଲବ, ରାଠୋର, ଶିଶୋଦୀୟ, ତୋମାର ]।

(ଖ) ଚାଲୁକ୍ୟ ବଂଶର ପ୍ରଧାନ ରାଜା— [ ଅନଙ୍ଗପାଳ, ଦ୍ୱିତୀୟ ପୁଲକେଶୀ, ଲଲାଟେନ୍ଦୁକେଶରୀ, ଯଯାତିକେଶରୀ ]।

୪ । ଓଡ଼ିଶାରେ କେଶରୀବଂଶୀୟ ରାଜାମାନଙ୍କର କି କି କୀର୍ତ୍ତି ଅଛି ?

୫ । ରାଜପୁତ ଜାତିର ଉତ୍ପତ୍ତି ସମ୍ବନ୍ଧରେ ଯାହାଜାଣ ଲେଖ ।

---

# ତୃତୀୟ ଅଧ୍ୟାୟ

## ମହମ୍ମଦ ଓ ଇସଲାମ ଧର୍ମ

ଇସଲାମ ଧର୍ମ ପ୍ରଚାରକ ମହାପୁରୁଷ ମହମ୍ମଦ ଖ୍ରୀ: ୫୭୦ ରେ ଆରବ ଦେଶର ମକ୍କା ସହରରେ ଜନ୍ମଗ୍ରହଣ କରିଥିଲେ । ପିଲାଦିନେ ସେ ଦେଶ ବିଦେଶରେ ବାଣିଜ୍ୟ କରିବାପାଇଁ ବୁଲୁଥିଲେ ଓ ଖ୍ରୀଷ୍ଟଧର୍ମ ସଂସ୍ପର୍ଶରେ ଆସି ଈଶ୍ୱରଙ୍କ କଥା ଭାବୁଥିଲେ । ସେ ଦେଖିଲେ ତାଙ୍କ ଦେଶର ଲୋକେ ବହୁପ୍ରକାର ଦେବତାଙ୍କୁ ପୂଜା କରୁଥିବାରୁ ଧର୍ମପାଇଁ ନିଜ ନିଜ ମଧ୍ୟରେ କଳି ଲାଗୁଥିବାରୁ ସେମାନଙ୍କ ମଧ୍ୟରେ ଏକତା ନାହିଁ । ତାଙ୍କ ଦେଶର ସବୁଠାରୁ ବଡ଼ ଦେବତା ମକ୍କାର କାବା ମନ୍ଦିରରେ ଥିଲେ । ସେଠାରେ ଧର୍ମ ନାମରେ ନାନାପ୍ରକାର ଅନାଚାର ହେଉଥିଲା । ତାଙ୍କ ଦେଶବାସୀଙ୍କ ମଧ୍ୟରେ କିପରି ଧର୍ମଭାବ ଜାତ ହେବ ଓ ଏକତା ଆସିବ ସେଥିପାଇଁ ସେ ବ୍ୟାକୁଳ ହୋଇଥିଲେ ।

ସେ ଖାଦେଜା ନାମ୍ନୀ ଜଣେ ଧନୀ ବିଧବାଙ୍କୁ ବିବାହ କରିଥିଲେ ଓ ବୁଦ୍ଧଙ୍କ ପରି ଗୋଟିଏ ପର୍ବତ ଗୁହା ମଧ୍ୟରେ ପ୍ରାର୍ଥନା କରି ୪୦ ବର୍ଷ ବୟସରେ ଏକ ନୂତନ ଧର୍ମତତ୍ତ୍ୱ ପାଇଲେ । ସେ ଅନୁଭବ କଲେ "ଈଶ୍ୱର ଏକ ଓ ତାଙ୍କର ନାମ ଅଲ୍ଲା ଏବଂ ସେ ଈଶ୍ୱରଙ୍କର ଦୂତ ।" ତାଙ୍କ ମତରେ ଈଶ୍ୱର ସର୍ବଶକ୍ତିମାନ୍, ସର୍ବଜ୍ଞ ଏବଂ ଅଦୃଶ୍ୟ । ତାଙ୍କ ମତରେ କୌଣସି ମୂର୍ତ୍ତି ପୂଜା କରିବା ଉଚିତ ନୁହେଁ; ଭଗବାନ ସାନ-ବଡ଼ ସମସ୍ତଙ୍କ ପାଇଁ ସମାନ; ଭଲ କାମ କଲେ ଭଗବାନ ସନ୍ତୁଷ୍ଟ ହେବେ ଓ ଖରାପ କାମ କଲେ ସେ ବିରକ୍ତ ହେବେ ଓ ଦଣ୍ଡ ଦେବେ । ଏହିସବୁ ବିଷୟ ତାଙ୍କର ଧର୍ମଗ୍ରନ୍ଥ 'କୋରାନ୍'ରେ ଲେଖାଅଛି । ମହମ୍ମଦ ସାନବଡ଼ ସମସ୍ତଙ୍କୁ ନିଜଧର୍ମରେ ଦୀକ୍ଷିତ କଲେ ଓ ସମସ୍ତଙ୍କୁ ଧର୍ମରେ ସମାନ

ଅଧିକାର କଲେ । ଏ କଥା ଦେଖି ମକ୍କାର ଲୋକମାନେ ରାଗିଗଲେ ।
ସେମାନେ ପୂର୍ବପ୍ରଚଳିତ କାଠ, ପଥରମୂର୍ତ୍ତି ପୂଜା ଛାଡ଼ିବାକୁ ନାରାଜ
ହୋଇଥିଲେ । ମକ୍କାର କାବା ମନ୍ଦିରକୁ ବହୁତ ଯାତ୍ରୀ ପ୍ରତିବର୍ଷ
ଆସୁଥିବାରୁ ସେମାନେ ବ୍ୟବସାୟ କରି ବହୁତ ଲାଭ କରୁଥିଲେ ।
ମହମ୍ମଦଙ୍କ ଧର୍ମ ପ୍ରଚାରିତ ହେଲେ ସେମାନଙ୍କ ଧର୍ମ ଓ ଜୀବିକା ନଷ୍ଟ
ହେବ ଭାବି ସେମାନେ ମହମ୍ମଦଙ୍କ ବିରୁଦ୍ଧରେ ଉଠିଲେ । ମହମ୍ମଦ
ବହୁକଷ୍ଟ ସହି ଖ୍ରୀ: ୬୨୨ରେ ମକ୍କାରୁ ମଦୀନାକୁ ପଳାଇଗଲେ ।
ସେହିଦିନଠାରୁ "ହିଜରା" (ପଳାୟନ) ଅବ୍ଦ ଗଣାଯାଏ । ମଦୀନାର
ଲୋକେ ତାଙ୍କ ଧର୍ମ ଗ୍ରହଣ କଲେ ଓ ଧର୍ମପ୍ରଚାର ଦିଗରେ ତାଙ୍କୁ
ସାହାଯ୍ୟ କରିଥିଲେ । ବୁଦ୍ଧ ଓ ଯୀଶୁଙ୍କପରି ମହମ୍ମଦ ଧର୍ମପରାୟଣ ଥିଲେ;
ମଧ୍ୟ ବାଧ୍ୟହୋଇ ମକ୍କା ବିରୁଦ୍ଧରେ ଯୁଦ୍ଧ କରିଥିଲେ । ସେ ଜିଣିଲେ ଓ
ମକ୍କାର ଲୋକମାନେ ତାଙ୍କ ଧର୍ମଗ୍ରହଣ କଲେ । ସେ ଖ୍ରୀ: ୬୩୨ ରେ
ମରିବାବେଳକୁ ତାଙ୍କ ଧର୍ମ ସାରା ଆରବରେ ବ୍ୟାପି ଯାଇଥିଲା । ଆରବ
ଏକ ଶାସନାଧୀନରେ ଆସିଲା ।

ମହମ୍ମଦଙ୍କ ପରେ ଇସଲାମ ଧର୍ମର ଗୁରୁ "ଖଲିଫା" ବାଗଦାଦ୍‌ରେ
ରହିଲେ ଓ ମୁସଲମାନ ଜଗତର ଶାସକ ହେଲେ । ଏହି ନୂଆ ଧର୍ମ ପ୍ରଚାର
କରିବାପାଇଁ ମୁସଲମାନ୍‌ମାନେ ଦେଶ ବିଦେଶ ଜୟ କରିବାକୁ ଲାଗିଲେ ।
ଫଳରେ ସେମାନେ ସ୍ପେନ୍‌ଠାରୁ ଅଫଗାନିସ୍ଥାନ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର
କରିଥିଲେ ।

## ମୁସଲମାନ୍‌ମାନଙ୍କର ସିନ୍ଧୁଦେଶ ଜୟ

ଆରବ ବଣିକମାନେ ବାଣିଜ୍ୟସୂତ୍ରରେ ଭାରତକୁ ଗୋଟିଏ
ସମୃଦ୍ଧିଶାଳୀ ଦେଶ ବୋଲି ଜାଣିଥିଲେ । ଏହାକୁ ସେମାନେ ଦଖଲ
କରିବାକୁ ସବୁବେଳେ ଇଚ୍ଛା କରୁଥିଲେ । ଅଷ୍ଟମ ଶତାବ୍ଦୀରେ ଏହି ଦେଶ
ଜୟକରି ଇସଲାମଧର୍ମ ପ୍ରଚାର କରିବାକୁ ତାଙ୍କୁ ସୁବିଧା ମିଳିଥିଲା ।

ଅରବର ଗୋଟିଏ ଜାହାଜକୁ ସିନ୍ଧୁ ଉପକୂଳରେ ଦଳେ ଜଳଦସ୍ୟୁ ଲୁଣ୍ଠନ କରିଥିଲେ । ଖଲିଫାଙ୍କର ପୂର୍ବପଟରେ ଥିବା ରାଜ୍ୟମାନଙ୍କ ଶାସନକର୍ତ୍ତା, ପାରସ୍ୟର ରାଜା ହଜାଜ୍ ସିନ୍ଧୁଦେଶର ସେହି ସମୟର ହିନ୍ଦୁରାଜା ଦାହିରଙ୍କୁ କ୍ଷତିପୂରଣ ମାଗିଲେ । ଦାହିରଙ୍କର ଜଳଦସ୍ୟୁମାନଙ୍କ ଉପରେ କୌଣସି ଅଧିକାର ନ ଥିବାରୁ ସେ କ୍ଷତିପୂରଣ ଦେବାକୁ ମନାକଲେ । ଏଥିରେ ହଜାଜ୍ ବିରକ୍ତ ହୋଇ ସିନ୍ଧୁଦେଶ ଆକ୍ରମଣ କରିବାକୁ ଦଳେ ସୈନ୍ୟ ପଠାଇଲେ । ଦାହିର ସେମାନଙ୍କୁ ପରାସ୍ତ କରିଥିଲେ । ତାଙ୍କର ସୈନ୍ୟମାନେ ଦୁଇଥର ପରାସ୍ତ ହେବା ପରେ ହଜାଜ୍ ତାଙ୍କର ଜାମାତା ମହମ୍ମଦ ବିନ୍‌କାସିମଙ୍କୁ ସେନାପତି କରି ବହୁସୈନ୍ୟସହ ଜୟ ଥର ପାଇଁ ପଠାଇଲେ । ଖ୍ରୀ: ୭୧୨ରେ ଦେବାଲ୍ ବନ୍ଦରଠାରେ ଭୀଷଣ ଯୁଦ୍ଧପରେ ଦାହିର ପରାସ୍ତ ଓ ନିହତ ହେଲେ । ମହମ୍ମଦ ବିନ୍‌କାସିମ୍ ସମସ୍ତ ସିନ୍ଧୁଦେଶ ଜୟକରି ଦାହିରଙ୍କ ଦୁଇ ଝିଅଙ୍କୁ ଖଲିଫାଙ୍କ ପାଖକୁ ପଠାଇଥିଲେ । ସେମାନେ ମିଥ୍ୟା ମନ୍ତ୍ରଣା ଦେବାରୁ ଖଲିଫା ମହମ୍ମଦ ବିନ୍‌କାସିମ୍‌ଙ୍କୁ ଗୋରୁର କଞ୍ଚା ଚମଡ଼ା ଭିତରେ ଭର୍ତ୍ତିହୋଇ ବାଗଦାଦ୍ ଆସିବା ପାଇଁ ଆଦେଶ ଦେଲେ । ମହମ୍ମଦ ବିନ୍‌କାସିମ ବାଟରେ ମରିଯାଇଥିଲେ । ଆରବୀୟମାନେ ସିନ୍ଧୁଦେଶ ଜୟକରି ଭାରତର ଅନ୍ୟ ଅଞ୍ଚଳ ଦଖଲ କରିବାକୁ ଚେଷ୍ଟା କରିଥିଲେ । କିନ୍ତୁ ଗୁର୍ଜରପ୍ରତିହାରମାନେ ସେମାନଙ୍କୁ ବାଧା ଦେଇଥିଲେ । ସେମାନେ ସିନ୍ଧୁଦେଶରେ ପ୍ରାୟ ତିନିଶହ ବର୍ଷ ଶାସନ କରିଥିଲେ ।

**ସିନ୍ଧୁ ବିଜୟର ଫଳ** :—ମୁସଲମାନ୍‌ମାନେ ସିନ୍ଧୁଦେଶରେ ପ୍ରଥମେ ଲୋକମାନଙ୍କ ଉପରେ ନାନାପ୍ରକାର ଅତ୍ୟାଚାର କରୁଥିଲେ । ହିନ୍ଦୁମାନେ ଉପାସନା କରିବାକୁ ସ୍ୱାଧୀନତା ପାଇ ନ ଥିଲେ ଓ ଜିଜିୟାକର ଦେବାକୁ ବାଧ୍ୟ ହୋଇଥିଲେ । ସେମାନେ କୃଷି ପ୍ରଭୃତି କଠିନ କାମ କରିବାକୁ ମଧ୍ୟ ବାଧ୍ୟ ହେଲେ । 'ପରେ

ଖଲିଫାଙ୍କ ଆଦେଶରେ ହିନ୍ଦୁମାନେ ସ୍ବାଧୀନଭାବରେ ନିଜର ଧର୍ମକାର୍ଯ୍ୟ କରିପାରୁଥିଲେ । ମୁସଲମାନମାନଙ୍କର ସିନ୍ଧୁବିଜୟ ହିନ୍ଦୁମାନଙ୍କୁ ବିଶେଷ ପ୍ରଭାବିତ କରିପାରି ନଥିଲା କିନ୍ତୁ ଆରବୀୟ ମୁସଲମାନମାନେ ଭାରତରୁ ଦର୍ଶନ, ଜ୍ୟୋତିଷ ଓ ଚିକିତ୍ସା ଶାସ୍ତ୍ର ପ୍ରଭୃତି ଅଧ୍ୟୟନ କରି ବିଶେଷ ଜ୍ଞାନ ଅର୍ଜନ କରିଥିଲେ ଏବଂ କାଳକ୍ରମେ ଏହି ନୂତନ ଜ୍ଞାନକୁ ଇଉରୋପୀୟ ରାଜ୍ୟମାନଙ୍କରେ ପ୍ରଚାର କରିଥିଲେ ।

---

# ଚତୁର୍ଥ ଅଧ୍ୟାୟ

## ଗଜନୀର ମୁସଲମାନମାନଙ୍କର ଭାରତ ଆକ୍ରମଣ

ଅଫଗାନିସ୍ଥାନ ଅନ୍ତର୍ଗତ ଗଜନୀର ମୁସଲମାନ ଶାସକ ସବକ୍ତଗିନ୍ ପଞ୍ଜାବର ହିନ୍ଦୁ ରାଜା ଜୟପାଳଙ୍କୁ ପରାସ୍ତ କରି ସିନ୍ଧୁନଦୀର ପଶ୍ଚିମ ପାଖରେ ଥିବା ଜୟପାଳଙ୍କର ରାଜ୍ୟସବୁ ଦଖଲ କରିଥିଲେ ।

**ମାମୁଦ :**—ସବକ୍ତଗିନ୍ ଖ୍ରୀ: ୯୯୭ରେ ପ୍ରାଣତ୍ୟାଗ କରିବାରୁ ତାଙ୍କର ପୁଅ ମାମୁଦ ଗଜନୀ ସିଂହାସନରେ ବସିଲେ । ତାଙ୍କ ଦେଶଠାରୁ ଭାରତ ବହୁତ ଧନଶାଳୀ ଓ ସେଠାର ରାଜପୁତ ଜାତିମାନେ ଭୀରୁ ଯୋଦ୍ଧା ବୋଲି ସେ ଶୁଣିଥିଲେ । ତେଣୁ ଭାରତ ଜୟ ନ କରି ତାହାକୁ ଲୁଣ୍ଠନ କରି ଧନ ରତ୍ନ ବୋହି ନେବାକୁ ଓ ହିନ୍ଦୁ ମନ୍ଦିର ଓ ମୂର୍ତ୍ତି ଭାଙ୍ଗି ସେମାନଙ୍କୁ ମୁସଲମାନ ଧର୍ମରେ ଦୀକ୍ଷିତ କରିବାକୁ ସେ ଇଚ୍ଛା କରିଥିଲେ । ସେଥିପାଇଁ ସେ ପ୍ରାୟ ସତରଥର ଭାରତଆକ୍ରମଣ କରିଥିଲେ । ପ୍ରଥମରୁ ସେ ଜୟପାଳଙ୍କ ରାଜ୍ୟ ଆକ୍ରମଣ କରିଥିଲେ । ଜୟପାଳ ପରାସ୍ତ ଓ ବନ୍ଦୀ ହେଲେ । ସେ ମାମୁଦଙ୍କୁ ବହୁତ ଧନ ଦେବାରୁ ସେ ତାଙ୍କୁ ଛାଡ଼ିଦେଲେ । ଏଥିରେ ଅପମାନିତ

ହୋଇ ଜୟପାଳ ନିଜ ପୁଅ ଅନଙ୍ଗପାଳଙ୍କୁ ସିଂହାସନ ଛାଡ଼ିଦେଇ ଆତ୍ମହତ୍ୟା କଲେ ।

ଅନଙ୍ଗପାଳ ପିତାଙ୍କ ଅପମାନର ପ୍ରତିଶୋଧ ନେବାପାଇଁ ଓ ହିନ୍ଦୁ-ଧର୍ମ ରକ୍ଷା କରିବାପାଇଁ ଦୃଢ଼ପ୍ରତିଜ୍ଞ ହେଲେ । ମାମୁଦ ପୁନର୍ବାର ତାଙ୍କ ରାଜ୍ୟ ଆକ୍ରମଣ କଲେ । ଏଥର ଅନଙ୍ଗପାଳ ରାଜପୁତ ଓ ପଞ୍ଜାବର ଅନ୍ୟ ରାଜାମାନଙ୍କ ସାହାଯ୍ୟରେ ଗୋଟିଏ ବିଶାଳ ସେନା ନେଇ ମାମୁଦଙ୍କ ସଙ୍ଗେ ଯୁଦ୍ଧ କଲେ । ମାମୁଦ ପରାସ୍ତ ହେବାକୁ ଲାଗିଲେ । ଏହି ସମୟରେ ଅନଙ୍ଗପାଳଙ୍କ ହସ୍ତୀ ଦେହରେ ଗୋଟିଏ ତୀର ବାଜିବାରୁ ସେ ଯୁଦ୍ଧକ୍ଷେତ୍ରରୁ ପଳାଇଲେ । ହିନ୍ଦୁ ସୈନ୍ୟମାନେ ଭାବିଲେ ତାଙ୍କ ସେନାପତି ଡରି ପଳାଇଲେ; ତେଣୁ ସେମାନେ ମଧ୍ୟ ଛତ୍ରଭଙ୍ଗ ହେଲେ । ମାମୁଦ ବହୁତ ହିନ୍ଦୁସୈନ୍ୟଙ୍କୁ ଗୋଡ଼ାଇ ମାରିଲେ; ବହୁତ ଲୁଣ୍ଠନ କଲେ ଓ ଜୟୀ ହେଲେ । ଏହା ଫଳରେ ଖ୍ରୀଃ ୧୦୦୯ରେ ପଞ୍ଜାବ ଓ ସୀମାନ୍ତପ୍ରଦେଶ ତାଙ୍କ ରାଜ୍ୟରେ ମିଶିଲା ।

ଏହାପରେ ମାମୁଦ ନଗରକୋଟ, ମୁଲତାନ, କାଶ୍ମୀର, ଥାନେଶ୍ୱର, କନୌଜ, କାଲିଞ୍ଜର, ଗୋଆଲିଅର ପ୍ରଭୃତି ଆକ୍ରମଣକରି ବହୁତ ଧନରତ୍ନ ଲୁଣ୍ଠନ କଲେ, ଅନେକ ହିନ୍ଦୁଙ୍କୁ ହତ୍ୟା କଲେ ଓ ଅନେକ ହିନ୍ଦୁକୀର୍ତ୍ତି ଧ୍ୱଂସକରି ବହୁତ ହିନ୍ଦୁଙ୍କୁ ଇସଲାମ ଧର୍ମରେ ଦୀକ୍ଷିତ କରାଇଲେ ।

ସେ ଖ୍ରୀଃ ୧୦୨୫ରେ ଗୁଜରାଟର ସମୁଦ୍ର ଉପକୂଳରେ ଥିବା ପ୍ରସିଦ୍ଧ ସୋମନାଥ ମନ୍ଦିର ଆକ୍ରମଣ ଓ ଲୁଣ୍ଠନ କରିଥିଲେ । ଏହି ମନ୍ଦିରରେ ବହୁତ ଧନରତ୍ନ ଥିଲା । ମାମୁଦ ବହୁତ ସୈନ୍ୟ ନେଇ ରାଜପୁତାନା ପାରହୋଇ ଏହି ମନ୍ଦିର ଆକ୍ରମଣ କଲେ । ଏଠାରେ ଅଳ୍ପ ହିନ୍ଦୁସୈନ୍ୟ ଥିବାରୁ ହିନ୍ଦୁମାନେ ପରାସ୍ତ ହେଲେ । ମାମୁଦ ମନ୍ଦିର ଭିତରେ ଥିବା

ଶିବଲିଙ୍ଗଙ୍କ ପାଖରେ ପହଞ୍ଚିଲେ । ପଣ୍ଡାମାନେ ଶିବଲିଙ୍ଗ ନ ଭାଙ୍ଗିଲେ ବହୁତ ଧନ ଦେବେ ବୋଲି ମାମୁଦଙ୍କୁ କାକୁତି ମିନତି କଲେ । ସେ



କିଛି ଶୁଣିଲେ ନାହିଁ ଓ ସେ ମୂର୍ତ୍ତି ବିକେତା ନୁହନ୍ତି ବୋଲି କହି ଶିବଲିଙ୍ଗଟିକୁ ଖଣ୍ଡ ବିଖଣ୍ଡ କରିଦେଲେ । ମନ୍ଦିର ଧ୍ୱସ୍ତ ହେଲା ଓ ଭିତରେ ଥିବା ଅଜସ୍ର ଧନରତ୍ନ ମଣିମାଣିକ୍ୟ ନେଇ ମାମୁଦ ଗଜନୀକୁ ବାହୁଡ଼ି ଗଲେ ।

ମୃତ୍ୟୁବେଳକୁ ସେ କିପରି ଏତେ ଧନ ଛାଡ଼ିଯିବେ ସେଥିପାଇଁ ବ୍ୟାକୁଳ ହୋଇଥିଲେ । ତାଙ୍କର ସମୁଦାୟ ଧନ ଗୃହପାଖରେ ଜମାକରି ରଖି ସେ ଖ୍ରୀ: ୧୦୩୦ରେ ପ୍ରାଣତ୍ୟାଗ କଲେ ।

**ମାମୁଦଙ୍କ ଚରିତ୍ର ।**—ମାମୁଦ ଜଣେ ବିଖ୍ୟାତ ରାଜା ଓ ବୀର ଥିଲେ । ସେ ସୁଶାସକ ଥିଲେ ଏବଂ ତାଙ୍କର ବିଶାଳ ରାଜ୍ୟରେ ଶାନ୍ତି ଶୃଙ୍ଖଳା ରଖିବାକୁ ସମର୍ଥ ହୋଇଥିଲେ । ସେ ବିଦ୍ୟାର ଆଦର କରୁଥିଲେ । ତେଣୁ

ତାଙ୍କ ରାଜସଭାରେ ବିଖ୍ୟାତ ଐତିହାସିକ ଅଲବେରୁନି ଓ ଫାର୍ଦୁସୀ, ଜିନସାଙ୍ଗ ପ୍ରଭୃତି ବହୁ କବି ଓ ପଣ୍ଡିତ ଥିଲେ। ଫାର୍ଦୁସୀ ସହନାମା ବୋଲି ଗୋଟିଏ ପ୍ରସିଦ୍ଧ ଗ୍ରନ୍ଥ ଲେଖିଥିଲେ ଓ ଅଲବେରୁନି ମାମୁଦଙ୍କ ସହିତ ଭାରତ ବୁଲି ଭାରତର ଶିକ୍ଷା ଓ ସଭ୍ୟତା ସମ୍ବନ୍ଧରେ ଗୋଟିଏ ସୁନ୍ଦର ବିବରଣୀ ଲେଖିଥିଲେ। ମାମୁଦ ଜଣେ ଲୁଣ୍ଠନକାରୀ ଧର୍ମାନ୍ଧ ଥିଲେ ମଧ୍ୟ ସେ ତାଙ୍କ ଦେଶକୁ ବଡ଼ ଉନ୍ନତ କରିଥିଲେ। ସେ ବହୁତ ଧନ ବ୍ୟୟକରି ଗଜନୀକୁ ସୁନ୍ଦର କରି ଗଢ଼ିଥିଲେ ଓ ସେଠାରେ ଗୋଟିଏ ବିଦ୍ୟାପୀଠ ବସାଇଥିଲେ କିନ୍ତୁ ତାଙ୍କର ସମସ୍ତ ସଦ୍‌ଗୁଣ ଲୋଭ, ରକ୍ତପିପାସା ଓ ଧର୍ମାନ୍ଧତା ଯୋଗୁ ଘୋଡ଼େଇ ହୋଇ ପଡ଼ିଥିଲା।

---

# ପଞ୍ଚମ ଅଧ୍ୟାୟ

## ଭାରତରେ ମୁସଲମାନ ରାଜ୍ୟ ସ୍ଥାପନ

ଦିଲ୍ଲୀ ସିଂହାସନ ପାଇଁ ପୃଥ୍ୱୀରାଜ ଓ ଜୟଚନ୍ଦ୍ରଙ୍କ ମଧ୍ୟରେ ଅଗରୁ ଶତ୍ରୁତା ଥିଲା। ଏହି ସମୟରେ ଜୟଚନ୍ଦ୍ର ଗୋଟିଏ ରାଜସୂୟ ଯଜ୍ଞର ଯୋଗାଡ଼ କରି ପୃଥ୍ୱୀରାଜଙ୍କ ବ୍ୟତୀତ ବହୁତ ରାଜାଙ୍କୁ ନିମନ୍ତ୍ରଣ କଲେ। ରାଜସୂୟ ଯଜ୍ଞରେ ନିମନ୍ତ୍ରିତ ରାଜାମାନଙ୍କୁ ଅଧୀନତାସୂଚକ କାର୍ଯ୍ୟ କରିବାକୁ ପଡ଼େ। ଏଥିପାଇଁ ପୃଥ୍ୱୀରାଜ ନିମନ୍ତ୍ରିତ ହୋଇଥିଲେ ମଧ୍ୟ ସେ ଆସି ନ ଥାନ୍ତେ। ଜୟଚନ୍ଦ୍ର ପୃଥ୍ୱୀରାଜଙ୍କର ଗୋଟିଏ ମୂର୍ତ୍ତି ରାଜସଭାର ଦ୍ୱାରଦେଶରେ ରଖିଥିଲେ। ଏହି ସଭାରେ ସଂଯୁକ୍ତାଙ୍କର ସ୍ୱୟମ୍ବର ହେଉଥିଲା। ସଂଯୁକ୍ତା ପୃଥ୍ୱୀରାଜଙ୍କୁ ବରଣମାଳା ଦେବେ ଜାଣି ସେ ସଭା ପାଖରେ ଲୁଚି ରହିଥିଲେ ସଂଯୁକ୍ତା • ପୃଥ୍ୱୀରାଜଙ୍କ ମୂର୍ତ୍ତିର ଗଳାରେ ବରଣମାଳା ଦେଲାକ୍ଷଣି ପୃଥ୍ୱୀରାଜ

ତାଙ୍କୁ ଘୋଡ଼ାରେ ବସାଇ ନିଜ ରାଜଧାନୀକୁ ନେଇ ପଳାଇଲେ ! ଏଥିରେ



ଜୟଚନ୍ଦ୍ର ଖୁବ ଅପମାନିତ ହେଲେ ଓ ପ୍ରତିଶୋଧ ନେବାପାଇଁ ସୁଯୋଗ ଖୋଜୁଥିଲେ ।

ସେତେବେଳେ ଗଜନୀର ସୁଲତାନମାନେ ଦୁର୍ବଳ ହୋଇଥିଲେ । ତାଙ୍କ ଅଧୀନସ୍ଥ ଆଫଗାନିସ୍ଥାନର 'ଘୋରମାନେ' ପରାକ୍ରମୀ ହୋଇ ଗଜନୀ ଅଧିକାର କଲେ ଓ ଘୋରୀବଂଶ ସ୍ଥାପନ କଲେ । ଏହି ଘୋରୀବଂଶରେ ଖ୍ୟାତ ସେନାପତି ମହମ୍ମଦ ଘୋରୀ ପଞ୍ଜାବ ଓ ମୁଲତାନ ଦଖଲ କରିଥିଲେ ଓ ଦିଲ୍ଲୀ ସିଂହାସନ ଅଧିକାର କରିବାପାଇଁ ସୁଯୋଗ ଖୋଜୁଥିଲେ ।

ପୃଥ୍ୱୀରାଜଙ୍କ ବିରୁଦ୍ଧରେ ପ୍ରତିଶୋଧ ନେବାପାଇଁ ଜୟଚନ୍ଦ୍ର ମହମ୍ମଦ ଘୋରୀଙ୍କୁ ନିମନ୍ତ୍ରଣ କଲେ । ହିନ୍ଦୁମାନଙ୍କ ମଧ୍ୟରେ ଏକତା ନଥିବାର ଜାଣି ମହମ୍ମଦ ଘୋରୀ ଖ୍ରୀ: ୧୧୯୧ରେ ତରେଇଁଠାରେ ପୃଥ୍ୱୀରାଜଙ୍କ ସହିତ ଯୁଦ୍ଧ କଲେ; ମାତ୍ର ପରାସ୍ତ ହୋଇ ନିଜ ଦେଶକୁ ବାହୁଡ଼ି ଗଲେ ।

ମହମ୍ମଦ ଘୋରୀ ଖ୍ରୀ: ୧୧୯୨ ରେ ପୁଣି ବହୁ ସୈନ୍ୟ ନେଇ ସେହି ତରେଇଁଠାରେ ପୃଥ୍ୱୀରାଜଙ୍କ ସଙ୍ଗେ ଯୁଦ୍ଧ କଲେ । ପୃଥ୍ୱୀରାଜ ଓ ରାଜପୁତ ସୈନ୍ୟମାନେ ସ୍ୱଦେଶ ରକ୍ଷାପାଇଁ ପ୍ରାଣପଣେ ଯୁଦ୍ଧ କରିଥିଲେ । ଶେଷରେ ପୃଥ୍ୱୀରାଜ ନିହତ ହେଲେ । ଆଜମୀର ଓ ଦିଲ୍ଲୀ ମହମ୍ମଦ ଘୋରୀଙ୍କର ଅଧୀନ ହେଲା । ଉତ୍ତରଭାରତରେ ହିନ୍ଦୁମାନଙ୍କର ସ୍ୱାଧୀନତା ଲୋପ ପାଇଲା ।

ଜୟଚନ୍ଦ୍ର ଭାବିଥିଲେ, ମହମ୍ମଦ ଘୋରୀ ଭାରତ ଲୁଣ୍ଠନ କରି ଚାଲିଯିବେ ଓ ସେ ଦିଲ୍ଲୀ ସିଂହାସନ ଅଧିକାର କରିବେ; ମାତ୍ର ତାଙ୍କ ଆଶା ବିଫଳ ହେଲା । ମହମ୍ମଦ ଘୋରୀ ଦିଲ୍ଲୀ ଅଧିକାର କରିବାର ଅଳ୍ପଦିନ ପରେ ଜୟଚନ୍ଦ୍ରଙ୍କୁ ପରାସ୍ତକରି କନୌଜ ଦଖଲ କଲେ ଓ ନିଜ ସେନାପତି କୁତବୁଦ୍ଦିନଙ୍କୁ ଜୟ କରିଥିବା ରାଜ୍ୟମାନଙ୍କର ଭାରଦେଇ ନିଜ ରାଜ୍ୟକୁ ଫେରିଗଲେ ।



କୁତବୁଦ୍ଦିନ୍ କାଲଞ୍ଜର, ଗୁଜରାଟ, ବିହାର ଓ ପଶ୍ଚିମବଙ୍ଗ ଅଧିକାର କଲେ । ପ୍ରାୟ ସମୁଦାୟ ଉତ୍ତର-ଭାରତରେ ମୁସଲମାନ ରାଜ୍ୟ ପ୍ରତିଷ୍ଠିତ ହେଲା । ମହମ୍ମଦ ଘୋରୀ ଖ୍ରୀ: ୧୨୦୬ରେ ନିହତ ହେବାରୁ ତାଙ୍କ ରାଜତ୍ୱର ଫଳ ସେ ଭୋଗି ପାରି ନ ଥିଲେ ।

# ଷଷ୍ଠ ଅଧ୍ୟାୟ

## ସପ୍ତମ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ହିନ୍ଦୁ ସଭ୍ୟତା

**ଧର୍ମ** :—ହର୍ଷବର୍ଦ୍ଧନଙ୍କ ପରେ ବୌଦ୍ଧଧର୍ମରେ ବହୁତ କୁସଂସ୍କାର ପ୍ରବେଶ କରିଥିଲା । ହିନ୍ଦୁଧର୍ମକୁ ନୂଆକରି ଗଢ଼ି ଲୋକମାନଙ୍କର ମନୋରଞ୍ଜନ କରିବାପାଇଁ ବହୁତ ପର୍ବପର୍ବାଣୀ ଖଞ୍ଜାଯାଇଥିଲା । ବୁଦ୍ଧଙ୍କୁ ବିଷ୍ଣୁଙ୍କର ଅବତାର ବୋଲି କୁହାଗଲା ଓ ବୌଦ୍ଧଧର୍ମର ଅନୁକରଣରେ ମଠ ଓ ସଂଘମାନ ଗଢ଼ା ଯାଇଥିଲା । କୁମାରିଲ ଭଟ୍ଟ, ଶଙ୍କରାଚାର୍ଯ୍ୟ ଓ ରାମାନୁଜ ପ୍ରଭୃତି ପଣ୍ଡିତମାନେ ବୌଦ୍ଧ ପଣ୍ଡିତମାନଙ୍କୁ ଯୁକ୍ତିରେ ପରାସ୍ତ କରିବାରୁ ହିନ୍ଦୁଧର୍ମ ପ୍ରସାର ଲାଭକଲା ଓ ବୌଦ୍ଧଧର୍ମ ଭାରତରୁ ଲୋପ ପାଇଲା ।

**କୁମାରିଲ ଭଟ୍ଟ** :—ସେ ଆସାମ ଅଞ୍ଚଳର ଜଣେ ବ୍ରାହ୍ମଣ ପଣ୍ଡିତ ଥିଲେ । ସେ ଯୁକ୍ତିବଳରେ ବହୁତ ବୌଦ୍ଧ ପଣ୍ଡିତଙ୍କୁ ପରାସ୍ତ କରିବାରୁ ଅନେକ ବୌଦ୍ଧ ହିନ୍ଦୁଧର୍ମ ଗ୍ରହଣ କରିଥିଲେ ।

**ଶଙ୍କରାଚାର୍ଯ୍ୟ** :—ବ୍ରାହ୍ମଣ୍ୟ ଧର୍ମର ପ୍ରଚାରକମାନଙ୍କ ମଧ୍ୟରେ ମାଳବର ବ୍ରାହ୍ମଣ ପଣ୍ଡିତ ଶଙ୍କରାଚାର୍ଯ୍ୟ ପ୍ରଧାନ । ସେ ଉପନିଷଦ ଓ ଗୀତା ପ୍ରଭୃତି କଠିନ ହିନ୍ଦୁଗ୍ରନ୍ଥମାନଙ୍କର ସରଳ ଟୀକା କରି ହିନ୍ଦୁଧର୍ମକୁ ଲୋକପ୍ରିୟ କରିଥିଲେ । ସେ ସାରା ଭାରତରେ ବ୍ରାହ୍ମଣ୍ୟ ଧର୍ମର ପ୍ରଚାର କରିଥିଲେ ଓ ମହୀଶୂରର ଶୃଙ୍ଗେରୀ, ଓଡ଼ିଶାର ପୁରୀ, ଗୁଜରାଟର ଦ୍ୱାରକା ଓ ହିମାଳୟର ବଦ୍ରୀନାଥରେ ଚାରୋଟି ମଠ ସ୍ଥାପନ କରିଥିଲେ । ତାଙ୍କ ସମୟରେ ଶୈବ ଧର୍ମ ବେଶୀ ପ୍ରଚାରିତ ହେଲା । ସେ ୩୨ ବର୍ଷ ବୟସରେ ଖ୍ରୀ: ୮୨୦ ରେ ଦେହତ୍ୟାଗ କରିଥିଲେ ।

**ରାମାନୁଜ** :—ମାନ୍ଦ୍ରାଜର ବିଶିଷ୍ଟ ପଣ୍ଡିତ ରାମାନୁଜ ବୈଷ୍ଣବଧର୍ମ ପ୍ରଚାର କରିଥିଲେ । କାଞ୍ଚି ଓ ଶ୍ରୀରଙ୍ଗ ତାଙ୍କର ପ୍ରଧାନ କ୍ଷେତ୍ର ଥିଲା । ଓଡ଼ିଶାରେ ମଧ୍ୟ ତାଙ୍କ ଧର୍ମ ପ୍ରଚାରିତ ହୋଇଥିଲା ।

**ସମାଜ** :—ବ୍ରାହ୍ମଣ୍ୟ ଧର୍ମର ପ୍ରସାର ଫଳରେ ବ୍ରାହ୍ମଣମାନେ ସମାଜରେ ଅଧିକ କ୍ଷମତାଶାଳୀ ହେଲେ । ଅସ୍ପୃଶ୍ୟତା ବଢ଼ିଲା ଓ ଜାତିବିଭାଗ କଠୋର ହେଲା ।

**ଶିକ୍ଷା, ସାହିତ୍ୟ ଓ ବିଜ୍ଞାନ** :—ଭାରତରେ ସେହି ଯୁଗରେ ଅନେକ ପ୍ରସିଦ୍ଧ ବିଦ୍ୟାପୀଠ ଥିଲା । ସୁଦୂର ଚୀନରୁ ଛାତ୍ରମାନେ ଆସି ଏହି ପୀଠମାନଙ୍କରେ ଅଧ୍ୟୟନ କରୁଥିଲେ । ସଂସ୍କୃତ ସାହିତ୍ୟର ବିଶେଷ ଉନ୍ନତି ହୋଇଥିଲା; ବାଣଙ୍କ 'ହର୍ଷଚରିତ', କଲ୍ହଣଙ୍କ 'ରାଜତରଙ୍ଗିଣୀ', ଭାସ୍କରାଚାର୍ଯ୍ୟଙ୍କ 'ସିଦ୍ଧାନ୍ତଶିରୋମଣି' ଓ ଜୟଦେବଙ୍କ 'ଗୀତଗୋବିନ୍ଦ' ପ୍ରଭୃତି ପ୍ରଧାନ ଗ୍ରନ୍ଥମାନ ରଚିତ ହୋଇଥିଲା । ଭାରତୀୟ ଚିକିତ୍ସକମାନେ ବାଗ୍‌ଦାଦର ବିଦ୍ୟାପୀଠମାନଙ୍କରେ ଅଧ୍ୟାପକ ନିଯୁକ୍ତ ହେଉଥିଲେ ।

**କୃଷି, ବାଣିଜ୍ୟ ଓ ଉପନିବେଶ** :—କୃଷିକାର୍ଯ୍ୟପାଇଁ ଜଳସେଚନର ବ୍ୟବସ୍ଥା ହୋଇଥିଲା । ତୁଳା ଓ ରେଶମର ସୁନ୍ଦର ଲୁଗାମାନ ବିକିବା ପାଇଁ ବଣିକମାନେ ବୋଇତ ଚଢ଼ି, ଯାଭା, ସୁମାତ୍ରା, ବାଲି, ଲମ୍ବକ, ଚୀନ, ଯାପାନ, ବ୍ରହ୍ମଦେଶ, ସିଂହଳ, ଆରବ ଓ ପାରସ୍ୟକୁ ଯାଉଥିଲେ । ଏହି ବାଣିଜ୍ୟ ଫଳରେ ଭାରତର ଉପକୂଳରେ ବହୁତ ବନ୍ଦର ନିର୍ମିତ ହୋଇଥିଲା ଓ ବାଲି, ଯାଭା ପ୍ରଭୃତିରେ ଉପନିବେଶମାନ ସ୍ଥାପିତ ହୋଇଥିଲା । ଭାରତର ଓ ବିଶେଷତଃ ଓଡ଼ିଶାର ବଣିକମାନେ ଏହି ଉପନିବେଶମାନଙ୍କରେ ହିନ୍ଦୁ ଓ ବୌଦ୍ଧକୀର୍ତ୍ତିମାନ ସ୍ଥାପନ କରୁଥିଲେ । ସେ ସବୁର ଧ୍ୱଂସାବଶେଷ ବର୍ତ୍ତମାନ ସୁଦ୍ଧା ଅଛି ।

**ଶିଳ୍ପକଳା** :—ହିନ୍ଦୁଧର୍ମ ପୁନର୍ବାର ଭାରତରେ ପ୍ରତିଷ୍ଠିତ ହେବା ପରେ ରାଜପୁତାନାର ଆବୁପର୍ବତ, ମଥୁରା, ଏଲୋରା, କାଞ୍ଚି ଓ ଭୁବନେଶ୍ୱର ପ୍ରଭୃତି ସ୍ଥାନମାନଙ୍କରେ ମଠ, ମନ୍ଦିର ଓ ଗୁମ୍ଫାମାନ ନିର୍ମିତ ହୋଇଥିଲା ।

**ଶାସନ** :—ଭାରତ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ଥିଲା । ସେଠାର ଶାସକମାନେ ଧାରାବାହିକଭାବରେ ଯୁଦ୍ଧରେ ବ୍ୟସ୍ତ ଥିବାରୁ ଶାସନ ଦିଗରେ

ବିଶେଷ ଉନ୍ନତି କରିପାରି ନ ଥିଲେ । ସେମାନେ ସର୍ବେସର୍ବା ଥିଲେ ମଧ୍ୟ ମନୋମୁଖୀ ଶାସନ ଚଳାଉ ନ ଥିଲେ । ସେମାନେ ଦେଶକୁ ଭେଳିଭେଳି ବିଭାଗରେ ବିଭକ୍ତ କରି ଶାସନର ବହୁଅଂଶ ଲୋକପ୍ରତିନିଧି ସଭା ହାତରେ ଛାଡ଼ି ଦେଇଥିଲେ । ଦୁର୍ଭିକ୍ଷ ବେଳେ କର ଛାଡ଼ କରାଯାଇ ପ୍ରଜାମାନଙ୍କୁ ନାନାପ୍ରକାର ସାହାଯ୍ୟ ଦିଆଯାଉଥିଲା । ଶିକ୍ଷାର ଉନ୍ନତି ନିମିତ୍ତ ବହୁ ଧନ ବ୍ୟୟ କରାଯାଉଥିଲା ।

## ଅନୁଶୀଳନୀ

୧ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ :—

(କ) ହଜାଜ୍ ଦାହିରଙ୍କ ବିରୁଦ୍ଧରେ କାହିଁକି ଯୁଦ୍ଧଘୋଷଣା କଲେ ?

(ଖ) ମାମୁଦ୍‌ଙ୍କର ଭାରତ ଆକ୍ରମଣର କି ଉଦ୍ଦେଶ୍ୟ ଥିଲା ?

(ଗ) ଜୟଚନ୍ଦ୍ର ପୃଥ୍ୱୀରାଜଙ୍କୁ କାହିଁକି ଭଲ ପାଉ ନ ଥିଲେ ?

୨ । 'କ' ସ୍ତମ୍ଭରୁ ଉପଯୁକ୍ତ ଶବ୍ଦ ବାଛି 'ଖ' ସ୍ତମ୍ଭର ଉପଯୁକ୍ତ ଶବ୍ଦ ସହିତ ଯୋଗ କରି ଗୋଟିଏ ଲେଖାଏଁ ବାକ୍ୟ ରଚନା କର :—

| 'କ' ସ୍ତମ୍ଭ | 'ଖ' ସ୍ତମ୍ଭ |
|---|---|
| ମାମୁଦ | ତରେଇନ |
| କୁତବୁଦ୍ଦିନ୍ | ସଂଯୁକ୍ତା |
| ସିନ୍ଧୁଦେଶ | ଦାସବଂଶ |
| ମହମ୍ମଦ ଘୋରି | ଫାର୍ସୀ |
| ପୃଥ୍ୱୀରାଜ | ମହମ୍ମଦ ବିନ୍‌କାଶିମ୍ |

୩ । ନିମ୍ନଲିଖିତ ଘଟଣାଗୁଡ଼ିକୁ କାଳର କ୍ରମ ଅନୁସାରେ ସଜାଇ ରଖ :—
ସୋମନାଥ ମନ୍ଦିର ଲୁଣ୍ଠନ, ଜୟପାଳଙ୍କ ମୃତ୍ୟୁ, ତରେଇନ ଯୁଦ୍ଧ, ମୁସଲମାନ୍‌ମାନଙ୍କର ସିନ୍ଧୁଦେଶ ଆକ୍ରମଣ, କୁତବୁଦ୍ଦିନ୍‌ଙ୍କର ବଙ୍ଗଦେଶ ଜୟ, ସଂଯୁକ୍ତାଙ୍କର ସ୍ୱୟମ୍ବର ।

# ସପ୍ତମ ଅଧ୍ୟାୟ

## ଓଡ଼ିଶାରେ ଗଙ୍ଗାବଂଶ ( ଖ୍ରୀ: ୧୦୭୭—ଖ୍ରୀ: ୧୪୩୫ )

ଯେତେବେଳେ ମୁସଲ୍‌ମାନ୍‌ମାନଙ୍କର ଆକ୍ରମଣ ଭାରତ ପ୍ରତି ଗୋଟିଏ ବଡ଼ ବିପଦ ହୋଇ ଉଠିଥିଲା ସେତେବେଳେ ଓଡ଼ିଶାରେ ଗଙ୍ଗାବଂଶ ନାମରେ ଗୋଟିଏ କ୍ଷମତାଶାଳୀ ରାଜବଂଶ ପ୍ରତିଷ୍ଠିତ ହୋଇଥିଲା। କାଳକ୍ରମେ ଅନ୍ୟ ପ୍ରଦେଶମାନ ମୁସଲ୍‌ମାନ୍‌ଙ୍କ କବଳରେ ପଡ଼ିଥିଲା କିନ୍ତୁ ଓଡ଼ିଶାରେ ଏହି ରାଜବଂଶର ରାଜାମାନେ ଏହି ପ୍ରଦେଶକୁ ବହୁଦିନ ସ୍ୱାଧୀନ ରଖିଥିଲେ। ସେମାନେ ବହୁତ ବଡ଼ ବଡ଼ ମନ୍ଦିରମାନ ତୋଳାଇଥିଲେ ଓ ସୁଶାସନ ଚଳାଇଥିଲେ। ତେଣୁ ଏହି ସମୟରେ ଓଡ଼ିଶାରେ ବହୁତ ଉନ୍ନତି ହୋଇଥିଲା।

**ଚୋଡ଼ଗଙ୍ଗ ଦେବ** ( ଖ୍ରୀ: ୧୦୭୭—ଖ୍ରୀ: ୧୧୪୭ ) :— ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବ ଓଡ଼ିଶାରେ ଗଙ୍ଗାବଂଶ ସ୍ଥାପନ କରିଥିଲେ। ସେ ପ୍ରଥମେ ଗୋଦାବରୀଠାରୁ ଋଷିକୁଲ୍ୟା ପର୍ଯ୍ୟନ୍ତ କଳିଙ୍ଗ ଅଞ୍ଚଳରେ ରାଜପଣ କରିଥିଲେ। ସେ କଳିଙ୍ଗର ରାଜଧାନୀ ମୁଖଲିଙ୍ଗମ୍‌ରେ ଅଭିଷିକ୍ତ ହୋଇଥିଲେ। କେଶରୀବଂଶର ଶେଷ ରାଜା ସୁବର୍ଣ୍ଣ କେଶରୀଙ୍କ ବିଶ୍ୱାସଘାତକ ମନ୍ତ୍ରୀ ବାସୁଦେବଙ୍କ ସାହାଯ୍ୟରେ ଚୋଡ଼ଗଙ୍ଗ ଉତ୍କଳ ଅଧିକାର କରିଥିଲେ। ସେ ବଙ୍ଗ, ଚୋଳ, ଚାଲୁକ୍ୟ ରାଜ୍ୟ ଓ ହୁଗୁଲି କୂଳରେ ଥିବା ମନ୍ଦାର ଦୁର୍ଗ ମଧ୍ୟ ଅଧିକାର କରିଥିଲେ। ମହାକୋଶଳର ରତ୍ନଦେବ ତ୍ରିକଳିଙ୍ଗ ରାଜ୍ୟର କେତେକ ଅଂଶ ଚୋଡ଼ଗଙ୍ଗଙ୍କ ଠାରୁ ଛଡ଼ାଇ ନେଇଥିଲେ। ଚୋଡ଼ଗଙ୍ଗଙ୍କର ରାଜ୍ୟ ଉତ୍ତରରେ ମେଦିନୀପୁର, ଦକ୍ଷିଣରେ ଗୋଦାବରୀ, ପୂର୍ବରେ ବଙ୍ଗୋପସାଗର ଓ ପଶ୍ଚିମରେ ପୂର୍ବଘାଟ ପର୍ଯ୍ୟନ୍ତ ବିସ୍ତୃତ ଥିଲା। ସେ ଖ୍ରୀ: ୧୧୩୫ରେ କଟକକୁ ରାଜଧାନୀ ଉଠାଇ ଆଣିଥିଲେ। ବଙ୍ଗଳାର ସେନବଂଶୀୟ ରାଜାମାନଙ୍କ ସହିତ ତାଙ୍କର ବନ୍ଧୁତା ଥିଲା। ସେ

ଜଣେ ସୁଦକ୍ଷ ଶାସକ ଥିଲେ । ଚୋଡ଼ଗଙ୍ଗ ପୋଖରୀ, ସାରଙ୍ଗଗଡ଼ ଓ ଯାଜପୁରର ଗଙ୍ଗେଶ୍ୱର ମନ୍ଦିର ତାଙ୍କର କୀର୍ତ୍ତି । ସେ ପୁରୀରେ ଜଗନ୍ନାଥ ମନ୍ଦିରର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ ।

**ଅନଙ୍ଗଭୀମ ଦେବ (୨)** (ଖ୍ରୀ: ୧୧୯୦—ଖ୍ରୀ: ୧୧୯୮) :— ଏହାଙ୍କ ଅମଳରେ ପୁରୀ ଜଗନ୍ନାଥଙ୍କର ବଡ଼ଦେଉଳର ନିର୍ମାଣ କାର୍ଯ୍ୟ ଶେଷ ହୋଇଥିଲା । ସେ ମନ୍ଦିରର ଯାତ୍ରା ଓ ପୂଜାପାଇଁ ବହୁତ ଜମି ଖଞ୍ଜିଥିଲେ ।



ସେହି ମନ୍ଦିର ଓଡ଼ିଶାର ସଂସ୍କୃତିର କେନ୍ଦ୍ର । ସେ ଲିଙ୍ଗରାଜ ମନ୍ଦିରର ମୁଖଶାଳା ନିର୍ମାଣ କରିଥିଲେ ।

**ଅନଙ୍ଗଭୀମ ଦେବ (୩)** (ଖ୍ରୀ: ୧୨୧୧—ଖ୍ରୀ: ୧୨୩୮) :— ସେ ଅନଙ୍ଗଭୀମ ଦେବ (୨) ଙ୍କର ନାତି । ସେ ଜଣେ ପ୍ରଖ୍ୟାତ ରାଜା ଥିଲେ ।

ସେ ରତ୍ନପୁରର କଲ୍‌ଚୁରି ରାଜାମାନଙ୍କୁ ପରାସ୍ତ କରିଥିଲେ । ସେମାନେ ଅନଙ୍ଗଭୀମ ଦେବଙ୍କର ବଶ୍ୟତା ସ୍ୱୀକାର କରି ନିଜ ରାଜ୍ୟ ଶାସନ କଲେ । ବଙ୍ଗଳାର ମୁସଲମାନ୍ ଶାସନକର୍ତ୍ତା ଗ୍ୟାସ୍‌ଉଦ୍ଦିନ୍‌ଙ୍କୁ ଖ୍ରୀଃ ୧୨୨୦ ରେ ସେ ପରାସ୍ତ କରିଥିଲେ । ସେ ମହାନଦୀକୂଳରେ ବାରବାଟୀ ଦୁର୍ଗ ତୋଳାଇଥିଲେ । ତାଙ୍କ ସମୟରେ ଅନେକ ରାଜପଥ, ପୁଷ୍କରିଣୀ, ପ୍ରମୋଦଭବନ ଓ ମନ୍ଦିରମାନ ନିର୍ମିତ ହୋଇଥିଲା । ସେ ନିଜ ଓଜନ ସମାନ ସୁନା ଦାନକରି 'ସ୍ୱର୍ଣ୍ଣତୁଳାପୁରୁଷ' ଉତ୍ସବ ପାଳନ କରିଥିଲେ । ତାଙ୍କ ସମୟରେ ସମୁଦାୟ ଓଡ଼ିଶାରେ ଭୂବନ୍ଦୋବସ୍ତ ହୋଇଥିଲା ।

**ଲାଙ୍ଗୁଳା ନରସିଂହ ଦେବ** :—ଅନଙ୍ଗଭୀମ ଦେବ (୩) ଙ୍କ ପରେ ତାଙ୍କ ପୁତ୍ର ଲାଙ୍ଗୁଳା ନରସିଂହ ଦେବ ଓଡ଼ିଶାର ରାଜା ହେଲେ । ସେ ବଙ୍ଗଳାର ମୁସଲମାନ୍‌ମାନଙ୍କ ସହିତ ଯୁଦ୍ଧକରି ମେଦିନୀପୁର, ହାଓଡ଼ା ଓ ହୁଗୁଳି ପ୍ରଭୃତି ଜିଲାମାନ ଓଡ଼ିଶାରେ ମିଶାଇଥିଲେ । ସେ ଦାକ୍ଷିଣାତ୍ୟର ଅନେକ ରାଜ୍ୟ ଜୟ କରିଥିଲେ । ତାଙ୍କ ରାଜସଭାରେ ବିଦ୍ୟାଧର ଓ ବିଶ୍ୱନାଥ କବିରାଜ ବୋଲି ଦୁଇଜଣ ବଡ଼ ପଣ୍ଡିତ ଥିଲେ । ବିଦ୍ୟାଧର 'ଏକାବଳୀ' ବୋଲି ଗୋଟିଏ ଅଳଙ୍କାରଶାସ୍ତ୍ର ଓ ବିଶ୍ୱନାଥ କବିରାଜ ସୁପ୍ରସିଦ୍ଧ ଅଳଙ୍କାରଶାସ୍ତ୍ର 'ସାହିତ୍ୟଦର୍ପଣ' ରଚନା କରିଥିଲେ । ବାଲେଶ୍ୱରର କ୍ଷୀରଚୋରା ଗୋପୀନାଥ ମନ୍ଦିର ଓ କୋଣାର୍କର ସୁପ୍ରସିଦ୍ଧ ସୂର୍ଯ୍ୟମନ୍ଦିର ଏହାଙ୍କର କୀର୍ତ୍ତି ।

ପୁରାଣରେ ବର୍ଣ୍ଣିତ ଅଛି ଯେ ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ ଅର୍କକ୍ଷେତ୍ରରେ ସୂର୍ଯ୍ୟଙ୍କୁ ପୂଜାକରି କୁଷ୍ଠରୋଗରୁ ମୁକ୍ତ ହୋଇଥିଲେ । ତେଣୁ ଲାଙ୍ଗୁଳା-ନରସିଂହ ଦେବ ସେହି ଅର୍କକ୍ଷେତ୍ରରେ ପ୍ରସିଦ୍ଧ କୋଣାର୍କ ମନ୍ଦିର ତୋଳାଇ ଥିଲେ ।

ଏହି କୋଣାର୍କ ମନ୍ଦିର ତୋଳାଇବାପାଇଁ ବାରଶହ ବଢ଼େଇ ଷୋଳ ବର୍ଷ ଲାଗିଥିଲେ ଓ ଓଡ଼ିଶାର ବା'ର ବର୍ଷର ରାଜସ୍ୱ ଗୁଲକ୍ଷ କୋଟି ଟଙ୍କା ଖର୍ଚ୍ଚ ହୋଇଥିଲା ।



ଏହି ମନ୍ଦିରଟି ଶିଳ୍ପକଳା ଦୃଷ୍ଟିରୁ ପୃଥିବୀର ଗୋଟିଏ ପ୍ରସିଦ୍ଧ କୀର୍ତ୍ତି । ଏହାର ଉଚ୍ଚତା ୨୩୦ ଫୁଟ ଓ ଏହା ଭାରତରେ ଉଚ୍ଚତମ ମନ୍ଦିର । ଏହାର ମୁଖଶାଳାଟି ୧୫୦ ଫୁଟ ଉଚ୍ଚ । କୋଣାର୍କର ବଡ଼ ଦେଉଳ ଓ ମୁଖଶାଳା ୧୭ ଫୁଟ ଉଚ୍ଚ ଏକ ପୀଠ ଉପରେ ଅବସ୍ଥିତ । ମୁଖଶାଳାର ପୂର୍ବ, ଦକ୍ଷିଣ ଓ ଉତ୍ତର ପଟରେ ପାହାଚ ଅଛି । ପୂର୍ବପଟ ପାହାଚ ଉପରେ ସପ୍ତଅଶ୍ୱ, ଉତ୍ତରପଟର ପାହାଚ ଉପରେ ଦୁଇଟି ଯୁଦ୍ଧଅଶ୍ୱ ଓ ଦକ୍ଷିଣପଟ ପାହାଚ ଉପରେ ଦୁଇଟି

ଯୁକ୍ତ ହସ୍ତୀ ଥିଲେ । ଦେଉଳଟି ଗୋଟିଏ ରଥପରି ଓ ସେଥିରେ ସୁକ୍ଷ୍ମକଳା-ମଣ୍ଡିତ ଚବିଶଟି ଚକ ଲାଗିଥିଲା । ମନ୍ଦିରର ବେଢ଼ା ପ୍ରାୟ ଏଗାର ଏକର ହେବ ।

ବର୍ତ୍ତମାନ ସେହି ମନ୍ଦିରଟି ଭାଙ୍ଗିଯାଇଛି । ମନ୍ଦିର ଆଗରେ ଥିବା ନବଗ୍ରହ ମୂର୍ତ୍ତି ଖଣ୍ଡିଏ ପ୍ରକାଣ୍ଡ ମୁଗୁନି ପଥରରେ ନିର୍ମିତ ହୋଇଥିଲା । ତାହାର ଓଜନ ୭୪୦ ମହଣ । ଇଂରେଜ ସରକାର ଏହି ପଥରଟି କାଟି କଲିକତାର ଯାଦୁଘରକୁ ନେବାକୁ ଚେଷ୍ଟାକରି ଅକୃତକାର୍ଯ୍ୟ ହୋଇ-ଥିଲେ । ଦେଉଳର ୧୭୦ ଫୁଟ ଉଚ୍ଚରେ ଗୋଟିଏ ୧୩୦ ମହଣ ଓଜନର ଗଜସିଂହ ମୂର୍ତ୍ତି ଥିଲା । ତାହା ବର୍ତ୍ତମାନ ବେଢ଼ା ଭିତରେ ପଡ଼ିଛି । ବଡ଼ ଦେଉଳର ଦଧିନଉତିଟି ଛପନ ହଜାର ମହଣ ଓ ତାହା ଦୁଇଶହ ଫୁଟ ଉଚ୍ଚରେ ଥିଲା । ଏହି ବଡ଼ ପଥରଖଣ୍ଡମାନ ସେଠାକୁ କିପରି ଆସିଥିଲା ଓ କିପରି ଏତେ ଉଚ୍ଚକୁ ଉଠିଥିଲା ଭାବିଲେ ବିସ୍ମିତ ହେବାକୁ ହୁଏ ।

ଏହି ମନ୍ଦିର ନିର୍ମାଣ ବିଷୟରେ ଗୋଟିଏ ଗଳ୍ପ ଅଛି । ନରସିଂହ ଦେବ କୋଣାର୍କ ମନ୍ଦିର ତୋଳାଇବା ଭାର ତାଙ୍କ ସେନାପତି ଶିବେଇ ସାନ୍ତରା ହାତରେ ଛାଡ଼ିଦେଇ ନିଶ୍ଚିନ୍ତ ରହିଲେ । ଷୋଳବର୍ଷ ବିତିଗଲା, ତଥାପି ଦେଉଳ ତୋଳା କାମ ଶେଷ ହେଲା ନାହିଁ । ତେଣୁ ସେ ଗୋଟିଏ ଦିନ ଠିକ୍ କରିଦେଲେ । ସେହିଦିନ ଦେଉଳ ତୋଳା ଶେଷ ନ ହେଲେ ବାରଶହ ବଢ଼େଇଙ୍କର ମୁଣ୍ଡକାଟ ହେବ । ସେହି ନିର୍ଦ୍ଦିଷ୍ଟ ଦିନ ଶେଷ ହେବାବେଳକୁ ବଢ଼େଇମାନେ ଦେଉଳର ସବୁ କାମ ଶେଷ କଲେ କିନ୍ତୁ କେହି ଦଧିନଉତି ବସାଇ ପାରିଲେ ନାହିଁ । ସେମାନଙ୍କ ମଧ୍ୟରେ ଭୟ ଲାଗିଲାଣି ପଡ଼ିଗଲା । ଏହି ସମୟରେ ବିଶୁ ମହାରଣାର ବାରବର୍ଷର ପୁଅ ଧର୍ମପଦ ବାପକୁ ଦେଖିବା ପାଇଁ ସେଠାକୁ ଆସିଥିଲା । ସେ ଦେଉଳର ଦଧିନଉତି ବସାଇ ଦେଲା । ବାରଶହ ବଢ଼େଇଯାକ ଭୟ କଲେ ଯେ ରାଜା ଏ କଥା

ଜାଣିଲେ ସେମାନଙ୍କୁ ଦଣ୍ଡ ଦେବେ ଓ ଧର୍ମପଦକୁ ପୁରସ୍କାର ଦେବେ । ତେଣୁ ସେ ଜାତିଭାଇଙ୍କ ମର୍ଯ୍ୟାଦା ରକ୍ଷାକରିବାପାଇଁ ଦେଉଳ ଉପରୁ ଡେଇଁ ପ୍ରାଣତ୍ୟାଗ କଲା ।

## ଅନୁଶୀଳନୀ

୧ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ :—

(କ) ଓଡ଼ିଶାରେ ଗଙ୍ଗାବଂଶ କିଏ ସ୍ଥାପନ କରିଥିଲେ ?

(ଖ) ଜଗନ୍ନାଥ ମନ୍ଦିର ନିର୍ମାଣକାର୍ଯ୍ୟ କିଏ ଆରମ୍ଭ କରିଥିଲେ ?

(ଗ) ପ୍ରଥମେ କିଏ ଓଡ଼ିଶାର ଭୂବନ୍ଦୋବସ୍ତ କରିଥିଲେ ?

(ଘ) ବିଶ୍ୱନାଥ କବିରାଜ୍ କେଉଁ ଗ୍ରନ୍ଥ ଲେଖିଥିଲେ ?

୨ । ନିଜକୁ ଧର୍ମପଦ ମନେକରି କୋଣାର୍କ ମନ୍ଦିରରେ ଦଧିନଉତି ବସାଇବା ବିଷୟରେ ତୁମ୍ଭର ଅନୁଭୂତି ବର୍ଣ୍ଣନା କର ।

୩ । ନିମ୍ନଲିଖିତ ବିଷୟ ବା ବ୍ୟକ୍ତିମାନଙ୍କ ସମ୍ବନ୍ଧରେ ଟିପ୍ପଣୀ ଲେଖ :—ଶିବେଇ ସାନ୍ତରା, ଶାମ୍ବ, ସାହିତ୍ୟଦର୍ପଣ, ସ୍ୱର୍ଣ୍ଣଚୂଳା ପୁରୁଷ, ଚୂଡ଼ଙ୍ଗ ଗଡ଼ ।

---

# ଅଷ୍ଟମ ଅଧ୍ୟାୟ

## ଭାରତରେ ମୁସଲମାନ ରାଜତ୍ୱ

### ଦାସବଂଶ ( ଖ୍ରୀ : ୧୨୦୬—ଖ୍ରୀ : ୧୨୯୦ )

**କୁତବୁଦ୍ଦିନ୍** (ଖ୍ରୀ : ୧୨୦୬—ଖ୍ରୀ : ୧୨୧୦) :—ସେ ପ୍ରଥମରୁ ଜଣେ ଦାସ ଥିଲେ । ସେ **ବଡ଼** ପ୍ରଭୁଭକ୍ତ ଓ ବୁଦ୍ଧିମାନ୍ ଥିବାରୁ ମହମ୍ମଦ ଘୋରୀ ତାଙ୍କୁ ସେନାପତି କରିଥିଲେ । ଯେତେବେଳେ ମହମ୍ମଦ ଘୋରୀ ଖ୍ରୀ : ୧୨୦୬ ରେ ମରିଗଲେ କୁତବୁଦ୍ଦିନ୍ ହିନ୍ଦୁସ୍ଥାନର ପ୍ରଥମ ସ୍ୱାଧୀନ ମୁସଲମାନ୍ ସମ୍ରାଟ୍ ହେଲେ । ସେ ନିଜେ ଓ ଏହି ବଂଶର ଆଉ କେତେଜଣ ସୁଲତାନ୍ ପ୍ରଥମରୁ ଦାସ ଥିବାରୁ ଏହି ବଂଶକୁ ଦାସବଂଶ ବୋଲଯାଏ । କୁତବୁଦ୍ଦିନ୍ ବଡ଼ ନିଷ୍ଠୁର ଥିଲେ । ସେ ଅନେକ ହିନ୍ଦୁ ମନ୍ଦିର ଓ ବୌଦ୍ଧମଠ ଭାଙ୍ଗି ସେହି ସ୍ଥାନମାନଙ୍କରେ ମସ୍‌ଜିଦ୍ ତୋଳାଇଥିଲେ । ସେ ଖ୍ୱାଜା କୁତବୁଦ୍ଦିନ୍ ନାମକ ଜଣେ ମୁସଲମାନ ଫକୀରଙ୍କ ସ୍ମୃତିରକ୍ଷାପାଇଁ ଦିଲ୍ଲୀରେ 'କୁତବମିନାର' ନାମରେ ଗୋଟିଏ ସ୍ତମ୍ଭର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ । ସେ ଖ୍ରୀ : ୧୨୧୦ ରେ ପ୍ରାଣତ୍ୟାଗ କଲେ ।



**ଅଲ୍‌ତାମସ୍** (ଖ୍ରୀ : ୧୨୧୧—ଖ୍ରୀ : ୧୨୩୬):—କୁତବୁଦ୍ଦିନ୍‌ଙ୍କ ପରେ ତାଙ୍କ ପୁତ୍ର ଆରାମ **ଦିଲ୍ଲୀ ସିଂହାସନରେ** ବସିଲେ । ସେ ଅକର୍ମଣ୍ୟ

ଥିବାରୁ ଅଲ୍‌ତାମସ୍ ସୁଲତାନ ହେଲେ । ସେ ପ୍ରଥମରୁ କୁତବୁଦ୍ଦିନ୍‌ଙ୍କର ଦାସ ଥିଲେ । ପରେ ତାଙ୍କ ରୂପଗୁଣରେ ମୁଗ୍ଧ ହୋଇ କୁତବୁଦ୍ଦିନ୍ ତାଙ୍କୁ ଜାମାତା କରିଥିଲେ । ସେ ଅମୀରମାନଙ୍କ ବିଦ୍ରୋହ ଦମନ କରି ନିଜର ଅଧିକାରକୁ ଦୃଢ଼ କରିଥିଲେ । ସେ ପଞ୍ଜାବ, ସିନ୍ଧୁ, ବଙ୍ଗଳା, ଗୋଆଲିଅର୍ ଓ ମାଳବ ଅଧିକାର କରିଥିଲେ; ମାଳବର ରାଜଧାନୀ ଉଜ୍ଜୟିନୀର ପ୍ରସିଦ୍ଧ ମହାକାଳ ମନ୍ଦିର ଧ୍ୱଂସ କରିଥିଲେ ଓ ସେହି ମନ୍ଦିରରେ ଥିବା ମହାକାଳମୂର୍ତ୍ତି ଓ ବିକ୍ରମାଦିତ୍ୟଙ୍କ ମୂର୍ତ୍ତିକୁ ଘେନିଆସି ଦିଲ୍ଲୀଠାରେ ଭାଙ୍ଗି ଦେଇଥିଲେ ।

ତାଙ୍କ ରାଜତ୍ୱକାଳରେ ଭୁବନବିଖ୍ୟାତ ମଙ୍ଗୋଲ୍ ରାଜା ଚେଙ୍ଗିଜ୍ ଖାଁ ଜଣେ ପଳାତକ ରାଜାଙ୍କୁ ଅନୁସରଣ କରି ସିନ୍ଧୁନଦୀ ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ । ସେହି ପଳାତକ ରାଜା ପାରସ୍ୟ ଦେଶକୁ ପଳାଇ ଯିବାରୁ ଭାରତବର୍ଷ ଚେଙ୍ଗିଜ୍ ଖାଁଙ୍କ ଆକ୍ରମଣରୁ ରକ୍ଷା ପାଇଲା ।

ଦାସବଂଶର ଶ୍ରେଷ୍ଠ ରାଜା ଅଲ୍‌ତାମସ୍ ଯେପରି ବୀର ସେହିପରି ବିଦ୍ୟୋତ୍ସାହୀ ଥିଲେ । ତାଙ୍କ ଦରବାରରେ ନାନା ଦେଶରୁ ପଣ୍ଡିତମାନେ ଆସି ଶାସ୍ତ୍ରଚର୍ଚ୍ଚା କରୁଥିଲେ । ସେ କୁତବମିନାର ନିର୍ମାଣକାର୍ଯ୍ୟ ଶେଷ କରାଇଥିଲେ । ଏହା ପାଞ୍ଚମହଲବିଶିଷ୍ଟ ପ୍ରାୟ ୨୫୦ଫୁଟ ଉଚ୍ଚର ନାନାକାରୁକାର୍ଯ୍ୟମଣ୍ଡିତ ଗୋଟିଏ ବିଶାଳ ସ୍ତମ୍ଭ । ବାଗ୍‌ଦାଦ୍‌ର ଖଲିଫା ଏହାଙ୍କ ରାଜ୍ୟଶାସନ ରୀତିକୁ ପ୍ରଶଂସା କରି ଏହାଙ୍କୁ ଗୋଟିଏ ରାଜପୋଷାକ ଉପହାର ଦେଇଥିଲେ ।

**ସୁଲତାନ୍ ରେଜିୟା** (ଖ୍ରୀ: ୧୨୩୬—ଖ୍ରୀ: ୧୨୪୦):—ଅଲ୍‌ତାମସ୍‌ଙ୍କର ପୁତ୍ରମାନେ ରାଜତ୍ୱ କରିବାକୁ ଅକ୍ଷମ ହେବାରୁ ଅମୀରମାନେ ତାଙ୍କର କନ୍ୟା ରେଜିୟାଙ୍କୁ ସିଂହାସନରେ ବସାଇଥିଲେ । ସେ

ଅନେକଙ୍କଦ୍ୱାରା ଶାସନ ଅଧିକାର କରିଥିଲେ ମଧ୍ୟ ଜଣେ ଅବିସିନୀୟ ଦାସ ପ୍ରତି ବିଶେଷ ଅନୁରକ୍ତ ଥିବାରୁ ଆଫଗାନ ଅମୀରମାନେ ବିଦ୍ରୋହୀ ହେଲେ । ବେଗମ୍ସା ଦୁଇଥର ଯୁଦ୍ଧରେ ପରାସ୍ତ ହୋଇ ବଣକୁ ପଳାଇଲେ ଓ ସେଠାରେ ପ୍ରାଣତ୍ୟାଗ କଲେ । ଦିଲ୍ଲୀରେ ମୁସଲମାନ୍‌ମାନେ ଦୀର୍ଘକାଳ ସମ୍ରାଟ୍ ହୋଇଥିଲେ । ମୁସଲମାନ୍ ସ୍ତ୍ରୀଲୋକମାନଙ୍କ ମଧ୍ୟରେ ଏକମାତ୍ର ବେଗମ୍‌ହିଁ ଦିଲ୍ଲୀସିଂହାସନରେ ବସିଥିଲେ ।



**ନାସିରୁଦ୍ଦିନ୍** ( ଖ୍ରୀ: ୧୨୪୬—ଖ୍ରୀ: ୧୨୬୬ ) :—ସେ ବଡ଼ ସରଳ ଥିବାରୁ ତାଙ୍କ ସମୟରେ ତାଙ୍କର ଶ୍ୱଶୁର ବଲ୍‌ବନ୍ ରାଜକାର୍ଯ୍ୟ ଚଳାଉଥିଲେ ।

**ଗିୟାସୁଦ୍ଦିନ୍ ବଲବନ୍** ( ଖ୍ରୀ : ୧୨୬୬—ଖ୍ରୀ: ୧୨୮୬ ) :—ନାସିରୁଦ୍ଦିନ୍‌ଙ୍କ ପରେ ବଲ୍‌ବନ୍ ଦିଲ୍ଲୀର ସୁଲତାନ ହେଲେ । ସେ ମଙ୍ଗୋଲ୍ ଆକ୍ରମଣରୁ ଦେଶକୁ ରକ୍ଷା କରିଥିଲେ । ତାଙ୍କର ନିରପେକ୍ଷ ଶାସନ ଓ କଠୋର ଦଣ୍ଡନୀତି ହେତୁ ଦେଶରେ ଶାନ୍ତି ବିରାଜିଥିଲା । ସେ ବଙ୍ଗଳାର ବିଦ୍ରୋହକୁ ନିଷ୍ଠୁରଭାବରେ ଦମନ କରିଥିଲେ । ସେ ବଡ଼ ଗୁଣୀ ଲୋକ ଥିଲେ ଓ ବିଦ୍ୟାର ଆଦର କରୁଥିଲେ । ତାଙ୍କ ଦରବାରରେ ଅମୀର ଖୁସ୍ରୁ ନାମରେ ଜଣେ ବିଖ୍ୟାତ ପାରସୀ କବି ଥିଲେ ।

**କାଇକୋବାଦ୍** ( ଖ୍ରୀ : ୧୨୮୭—ଖ୍ରୀ : ୧୨୯୦ )—ବଲ୍‌ବନ୍‌ଙ୍କ ନାତି ବିଳାସୀ ଓ ଅତ୍ୟାଚାରୀ କାଇକୋବାଦ୍‌ଙ୍କୁ **ପଞ୍ଜାବର ଶାସନକର୍ତ୍ତା ଜଲ୍ଲାଲଉଦ୍ଦିନ୍ ଖିଲିଜି ହତ୍ୟାକରି** ଦିଲ୍ଲୀ ସିଂହାସନ ଅଧିକାର କଲେ । ଖ୍ରୀ: ୧୨୯୦ରେ **ଦାସବଂଶ** ଲୋପପାଇ **ଖିଲିଜି** ବଂଶ ସ୍ଥାପିତ ହେଲା ।

---

# ନବମ ଅଧ୍ୟାୟ

## ଖିଲିଜି ବଂଶ ( ଖ୍ରୀ : ୧୨୯୦ — ଖ୍ରୀ : ୧୩୨୦ )

**ଜଲ୍ଲାଲ୍‌ଉଦ୍ଦିନ୍ ଖିଲିଜି** (ଖ୍ରୀ: ୧୨୯୦—ଖ୍ରୀ: ୧୨୯୬) :—ବୃଦ୍ଧ ଓ ଉଦାର ଜଲ୍ଲାଲଉଦ୍ଦିନ୍‌ଙ୍କ ସମୟରେ ମଙ୍ଗୋଲ୍‌ମାନେ ଭାରତ ଆକ୍ରମଣ କରି ପରାସ୍ତ ହୋଇଥିଲେ ଓ ସେମାନଙ୍କ ମଧ୍ୟରୁ କେତେକ ଇସ୍‌ଲାମଧର୍ମ ଗ୍ରହଣକରି **ଦିଲ୍ଲୀ ନିକଟରେ** ରହିଥିଲେ । **ଜଲ୍ଲାଲ୍‌ଙ୍କ** ଜାମାତା ଆଲ୍ଲାଉଦ୍ଦିନ୍ **ଖ୍ରୀ:** ୧୨୯୪ରେ ଦାକ୍ଷିଣାତ୍ୟର ଦେବଗିରି **ଆକ୍ରମଣ** କରି ସେଠାର ରାଜାଙ୍କୁ ପରାସ୍ତ କରିଥିଲେ । ଦେବଗିରି ଲୁଣ୍ଠିତ ହେଲା । ସେଠାର ରାଜା ଅଲ୍ଲାଉଦ୍ଦିନ୍‌ଙ୍କ ସଙ୍ଗେ ସନ୍ଧି କରିବାରୁ ଅଲ୍ଲାଉଦ୍ଦିନ୍ ବହୁତ ଧନ ଓ ଏଲିଚ୍‌ପୁର ନଗର ପାଇଲେ । ଏହାହିଁ ମୁସଲମାନ୍‌ମାନଙ୍କର ପ୍ରଥମ ଦାକ୍ଷିଣାତ୍ୟ ଆକ୍ରମଣ ।

ବିଜୟୀ ଅଲ୍ଲାଉଦ୍ଦିନ୍‌ଙ୍କୁ ଜଲ୍ଲାଲଉଦ୍ଦିନ୍ ଆନନ୍ଦରେ ଆଲିଙ୍ଗନ କଲାବେଳେ ବିଶ୍ୱାସଘାତକ ଓ କୃତଘ୍ନ ଅଲ୍ଲାଉଦ୍ଦିନ୍ ତାଙ୍କୁ ହତ୍ୟା କରିଥିଲେ ।

**ଆଲ୍ଲାଉଦ୍ଦିନ୍** (ଖ୍ରୀ: ୧୨୯୬—ଖ୍ରୀ: ୧୩୧୫) :—ଜଲ୍ଲାଲ୍‌ଙ୍କ ହତ୍ୟାପରେ ଅଲ୍ଲାଉଦ୍ଦିନ୍ ନିଜର କ୍ଷମତା ଦୃଢ଼କରିବାପାଇଁ ଜଲ୍ଲାଲ୍‌ଉଦ୍ଦିନ୍‌ଙ୍କର

ଅଣ୍ଟ୍ରୀସ୍ ଓ ବଡ଼ ଜମିନ୍ଦାରମାନଙ୍କୁ ହତ୍ୟା କରିଥିଲେ । ତେଣୁ ମୁସଲମାନ୍‌ମାନେ ତାଙ୍କ ଉପରେ ଉତ୍ୟକ୍ତ ହୋଇଥିଲେ । ସେ ଦାନ, ଦଣ୍ଡ ଓ ଭେଦ ନୀତି ପ୍ରୟୋଗକରି ଅଳ୍ପ ସମୟ ମଧ୍ୟରେ ଦେଶରେ ଶାନ୍ତି ପ୍ରତିଷ୍ଠା କରିଥିଲେ ।

**ରାଜ୍ୟବିସ୍ତାର** :– ଅଲ୍ଲାଉଦ୍ଦିନ୍ ପ୍ରଥମେ ଗୁଜରାଟର ରାଜାଙ୍କୁ ପରାସ୍ତକରି ତାଙ୍କ ରାଣୀ କମଳା ଦେବୀଙ୍କୁ ବଳପୂର୍ବକ ବିବାହ କରିଥିଲେ । ସେ ଚିତୋରର ରାଣୀ ପରମାସୁନ୍ଦରୀ ପଦ୍ମିନୀଙ୍କୁ ପାଇବା ଆଶାରେ ଚିତୋର ଆକ୍ରମଣ କଲେ କିନ୍ତୁ ପଦ୍ମିନୀଙ୍କର ସ୍ୱାମୀ ଚିତୋରର ରାଣା ରତନ ସିଂହ ଅଲ୍ଲାଉଦ୍ଦିନ୍‌ଙ୍କ ସଙ୍ଗେ ପ୍ରାଣପଣେ ଲଢ଼ିଥିଲେ । ସେ ଚିତୋରରେ ପଶି ନପାରି ପଦ୍ମିନୀଙ୍କୁ ଥରେ ଦେଖିଲେ ଚିତୋର ଛାଡ଼ି ଚାଲିଯିବେ ବୋଲି ଛଳନା କଲେ । ରତନ ସିଂହ ଯୁଦ୍ଧରୁ ରକ୍ଷା ପାଇବାପାଇଁ ଏଥିରେ ରାଜି ହେଲେ ଓ ପଦ୍ମିନୀଙ୍କୁ ଅଲ୍ଲାଉଦ୍ଦିନ୍‌ଙ୍କ ପାଖକୁ ନ ଆଣି ତାଙ୍କର ରୂପ ଦର୍ପଣରେ ଦେଖାଇଥିଲେ । ରତନ ସିଂହ ଅଲ୍ଲାଉଦ୍ଦିନ୍‌ଙ୍କୁ ବିଦାୟ ଦେବାକୁ ଅସିଲା-ବେଳେ ଅଲ୍ଲାଉଦ୍ଦିନ୍ ତାଙ୍କୁ ବନ୍ଦୀକରି ଦିଲ୍ଲୀକୁ ନେଇଗଲେ ଏବଂ କହି ପଠାଇଲେ,'ପଦ୍ମିନୀ ଦିଲ୍ଲୀକୁ ଅସିଲେ ସେ ରତନ ସିଂହଙ୍କୁ ଛାଡ଼ିଦେବେ ।'



ପଦ୍ମିନୀ ସ୍ୱାମୀଙ୍କୁ ଉଦ୍ଧାର କରିବାପାଇଁ ଏଥିରେ ରାଜିହୋଇ ଖବର ଦେଲେ ଯେ ସେ ୭୦୦ ପାଲିଙ୍କିରେ ଦାସୀମାନଙ୍କ ସହିତ ଦିଲ୍ଲୀ ଯିବେ । ଅଲ୍ଲାଉଦ୍ଦିନ୍ ଏଥିରେ ରାଜି ହେବାରୁ ପଦ୍ମିନୀ ପାଲିଙ୍କିମାନଙ୍କରେ ବଳୁଆ ସୈନ୍ୟମାନଙ୍କୁ ଭର୍ତ୍ତିକରି ଦିଲ୍ଲୀ ଗଲେ । ସେ ରତନ ସିଂହଙ୍କ ସହିତ ଆଗ ଦେଖା କରିବା ପାଇଁ ଅନୁମତି ମାଗିଲେ । ଅଲ୍ଲାଉଦ୍ଦିନ୍ ଅନୁମତି ଦେବାରୁ ପଦ୍ମିନୀ ରତନ ସିଂହଙ୍କ ସହିତ ଦେଖାକରି ସବୁ ଗୁପ୍ତକଥା କହିଲେ । ରାଜପୁତ ସୈନ୍ୟମାନଙ୍କ ସାହାଯ୍ୟରେ ରତନ ସିଂହ ପଦ୍ମିନୀଙ୍କୁ ନେଇ ଚିତୋର ପଳାଇ ଆସିଲେ । ଅଲ୍ଲାଉଦ୍ଦିନ୍ ରାଗିଯାଇ ପୁଣି ଚିତୋର ଆକ୍ରମଣ କଲେ, ରତନ ସିଂହ ହାରିଗଲେ । ପଦ୍ମିନୀ ନିଆଁରେ ଝାସ ଦେଲେ । ଅଲ୍ଲାଉଦ୍ଦିନ୍ ଚିତୋର ଦଖଲ କଲେ ସତ କିନ୍ତୁ ପଦ୍ମିନୀଙ୍କୁ ପାଇଲେ ନାହିଁ । ଏହାର ୧୫ ବର୍ଷ ପରେ ଚିତୋର ପୁଣି ସ୍ୱାଧୀନ ହୋଇଥିଲା ।

ଅଲ୍ଲାଉଦ୍ଦିନ୍ ଖ୍ରୀ: ୧୩୦୭ରେ ତାଙ୍କର ସେନାପତି ମାଲିକ କାଫୁରଙ୍କୁ ଦାକ୍ଷିଣାତ୍ୟ ଜୟ କରିବାକୁ ପଠାଇଥିଲେ । ମାଲିକ କାଫୁର ଦେବଗିରି, ଓରଙ୍ଗଲ ଓ ଦ୍ୱାରସମୁଦ୍ର ରାଜ୍ୟମାନ ଜୟକରି ସେତୁବନ୍ଧ ରାମେଶ୍ୱର ପର୍ଯ୍ୟନ୍ତ ରାଜ୍ୟବିସ୍ତାର କରିଥିଲେ ।

ଅଲ୍ଲାଉଦ୍ଦିନ୍ ହିମାଳୟଠାରୁ ସେତୁବନ୍ଧ ରାମେଶ୍ୱର ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ ମଧ୍ୟ ଗଙ୍ଗାବଂଶର ପରାକ୍ରମୀ ରାଜାମାନଙ୍କ ଭୟରେ ଓଡ଼ିଶା ଆକ୍ରମଣ କରିବାକୁ ସାହସ କରି ନଥିଲେ । ଏହା ଓଡ଼ିଆମାନଙ୍କ ପକ୍ଷରେ କମ୍ ଗୌରବର ବିଷୟ ନୁହେଁ ।

ଅଲ୍ଲାଉଦ୍ଦିନ୍‌ଙ୍କ ସମୟରେ ମଙ୍ଗୋଲମାନେ ବାରମ୍ବାର ଭାରତ ଆକ୍ରମଣ କରୁଥିଲେ । ଦିଲ୍ଲୀରେ ଥିବା ମଙ୍ଗୋଲମାନେ ଷଡ଼ଯନ୍ତ୍ର କରୁଥିବାର ଜଣାପଡ଼ିବାରୁ ଅଲ୍ଲାଉଦ୍ଦିନ୍ ଏକାଦିନକେ ତିରିଶ ହଜାର ମଙ୍ଗୋଲଙ୍କୁ ହତ୍ୟା କରିଥିଲେ ।

**ଶାସନ** :—ସେ ବଡ଼ କଠୋର ଶାସକ ଥିଲେ ଓ ହିନ୍ଦୁମାନଙ୍କୁ ଦରିଦ୍ର ବେଶରେ ଦେଖିବାକୁ ଭଲ ପାଉଥିଲେ । ସେ ଅନେକ ଗୁପ୍ତଚର ନିଯୁକ୍ତ କରି ଦେଶର ସବୁ ଖବର ରଖୁଥିଲେ । ଅମୀରମାନେ ଏକଜୁଟ ନ ହେବାପାଇଁ ସେ କଡ଼ା ଆଇନ ଗଢ଼ିଥିଲେ । ସେ ଦେଶରୁ ମଦ୍ୟପାନ ଉଠାଇ ଦେଇଥିଲେ । ଅପରାଧୀମାନଙ୍କୁ କଠିନ ଦଣ୍ଡ ଦିଆଯାଉଥିବାରୁ ଦେଶରେ ଚୋରି ଡକାୟତି ବେଶୀ ହେଉ ନ ଥିଲା । ତାଙ୍କର ଗୋଟିଏ ବିଶାଳ ସେନା ଥିଲା । ସେ ଜାଗିର ପ୍ରଥା ଉଠାଇ ସେମାନଙ୍କୁ ବେତନ ଦେଉଥିଲେ । ସେ ବଜାରର ଦରଦାମ ନିୟନ୍ତ୍ରଣ କରିଥିଲେ । ନିର୍ଦ୍ଦିଷ୍ଟ ମୂଲ୍ୟରେ ଖାଣ୍ଟି ଜିନିଷ ମିଳୁଥିଲା । ନିୟମର ବ୍ୟତିକ୍ରମ କଲେ ଦୋକାନୀ-ମାନଙ୍କୁ କଠିନ ଦଣ୍ଡ ଦିଆ ଯାଉଥିଲା । ସେ ବିଦ୍ୟୋତ୍ସାହୀ ଥିଲେ ଓ ତାଙ୍କ ସଭାରେ ଅମୀର ଖୁସ୍ରୁ ନାମରେ ଜଣେ କବି ଓ ଐତିହାସିକ ଥିଲେ ।

**ଚରିତ୍ର** :—ଅଲାଉଦ୍ଦିନ୍ ବଡ଼ ନିଷ୍ଠୁର, ସନ୍ଦେହୀ ଓ ଗର୍ବୀ ଥିଲେ । ସେ ନରହତ୍ୟା କରିବାପାଇଁ ଆଦୌ କୁଣ୍ଠାବୋଧ କରୁ ନ ଥିଲେ ।

**ଅଲ୍ଲାଉଦ୍ଦିନ୍‌ଙ୍କ** ବଂଶଧରମାନେ ଦୁର୍ବଳ ଥିବାରୁ ଦିଲ୍ଲୀସିଂହାସନ ପାଇଁ ନାନା ଷଡ଼ଯନ୍ତ୍ର ଚାଲିଥିଲା । ଶେଷରେ ପଞ୍ଜାବର ଶାସନକର୍ତ୍ତା ଗାଜିମାଲିକ ଗିୟାସୁଦ୍ଦିନ୍ ତୋଗଲକ ନାମ ଧାରଣକରି ଦିଲ୍ଲୀ ସିଂହାସନ ଅଧିକାର କରିଥିଲେ ।

---

# ଦଶମ ଅଧ୍ୟାୟ

## ତୋଗଲକ ବଂଶ (ଖ୍ରୀ: ୧୩୨୦—ଖ୍ରୀ: ୧୪୧୨)

**ଗିୟାସୁଦ୍ଦିନ୍ ତୋଗଲକ** (ଖ୍ରୀ: ୧୩୨୦—ଖ୍ରୀ: ୧୩୨୫):—ସେ ସୁଶାସନ ଚଳାଇଥିଲେ ଓ ମଙ୍ଗୋଲ ଆକ୍ରମଣରୁ ଦେଶକୁ ରକ୍ଷା କରିଥିଲେ । ତାଙ୍କର ପୁଅ ଜୁନା ଖାଁଙ୍କ ଦ୍ୱାରା ସେ ବିଦର ଓ ୱରଙ୍ଗଲ ଅଧିକାର କରିଥିଲେ । ବଙ୍ଗଳାର ବିଦ୍ରୋହ ଦମନକରି ଫେରିବାବେଳେ ଜୁନା ଖାଁ ତାଙ୍କୁ ଅଭ୍ୟର୍ଥନା କରିବାପାଇଁ ଗୋଟିଏ ସଭାମଣ୍ଡପ କରିଥିଲେ । ଏହି ମଣ୍ଡପର ଗୃହଟି ପଡ଼ି ଗିୟାସୁଦ୍ଦିନ୍ ପ୍ରାଣତ୍ୟାଗ କରିଥିଲେ ।

**ମହମ୍ମଦ ତୋଗଲକ** (ଖ୍ରୀ: ୧୩୨୫—ଖ୍ରୀ: ୧୩୫୧):—ଜୁନାଖାଁ ମହମ୍ମଦ ତୋଗଲକ ନାମ ଧାରଣକରି ଦିଲ୍ଲୀର ସୁଲତାନ୍ ହେଲେ ।

**ଚରିତ୍ର** :—ସେ ଜଣେ ଭାରି ବୁଦ୍ଧିମାନ୍, ଯୋଦ୍ଧା, ବକ୍ତା ଓ ଦାନୀ ଲୋକ ଥିଲେ । ସେ ଧର୍ମାନ୍ଧ ନ ଥିଲେ । ଏହି ସଦ୍‌ଗୁଣମାନଙ୍କ ସଙ୍ଗେ ସଙ୍ଗେ ତାଙ୍କର ଗୁଡ଼ିଏ ଦୁର୍ଗୁଣ ଥିଲା । ସେ ଖିଆଲବାଜ ଓ ନିଷ୍ଠୁର ଥିବାରୁ ତାଙ୍କର ଜନହିତକର ଯୋଜନାଗୁଡ଼ିକ ବିଫଳ ହୋଇଥିଲା । ତେଣୁ ତାଙ୍କୁ କେତେକ ଅଡ଼ବାୟା ବୋଲି ମନେ କରନ୍ତି କିନ୍ତୁ ସେ ଅଡ଼ବାୟା ନୁହନ୍ତି ସମୟୋପଯୋଗୀ ହୋଇ ନ ଥିବାରୁ ତାଙ୍କର ଯୋଜନାମାନ ବିଫଳ ହୋଇଥିଲା ।

**ପାରସ୍ୟ ଓ ଚୀନ ସୀମାନ୍ତ ଆକ୍ରମଣ** :—ପୃଥିବୀଜୟ କରିବା ଆଶାରେ ମହମ୍ମଦ ତୋଗଲକ ପାରସ୍ୟ ଓ ଚୀନଦେଶର ସୀମାନ୍ତରେ ଥିବା କେତେକ ପାହାଡ଼ିଆ ରାଜ୍ୟ ଆକ୍ରମଣ କରିଥିଲେ । ଶୀତକଷ୍ଟ ଓ ଧନର ଅଭାବରୁ ତାଙ୍କର ସୈନ୍ୟମାନେ ବହୁକଷ୍ଟ ପାଇଲେ ଓ ତାଙ୍କର ଅଭିଯାନମାନ ବିଫଳ ହେଲା ।

**ମଙ୍ଗୋଲମାନଙ୍କ ସହିତ ସମ୍ପର୍କ** :—ମଙ୍ଗୋଲମାନେ ଭାରତ ଆକ୍ରମଣ କରିବାରୁ ମହମ୍ମଦ ତୋଗଲକ ସେମାନଙ୍କ ସହିତ ଯୁଦ୍ଧ ନ କରି ସେମାନଙ୍କୁ ବହୁତ ଧନ ଦେଇ ଫେରାଇ ଦେଉଥିଲେ । ସେମାନେ ଧନ ଲୋଭରେ ବାରମ୍ବାର ଭାରତ ଆକ୍ରମଣ କରୁଥିଲେ ।

**ରାଜଧାନୀ ପରିବର୍ତ୍ତନ** :—ବିଦେଶୀ ଶତ୍ରୁମାନେ ଉତ୍ତର ପଶ୍ଚିମ ସୀମାନ୍ତରୁ ଦିଲ୍ଲୀକୁ ଶୀଘ୍ର ଆକ୍ରମଣ କରୁଥିବାରୁ ଓ ଦିଲ୍ଲୀ ତାଙ୍କ ରାଜ୍ୟ ମଝିରେ ନଥିବାରୁ ସେ ତାଙ୍କ ରାଜଧାନୀ ହାଇଦ୍ରାବାଦର ଦୌଲତାବାଦକୁ ଉଠାଇ ନେଇଥିଲେ । ସେତେବେଳେ ଦ୍ରୁତଗାମୀ ଯାନ ନ ଥିବାରୁ ଓ ଦିଲ୍ଲୀ ଦୌଲତାବାଦରୁ ସାତଶହ ମାଇଲ ଦୂର ହୋଇଥିବାରୁ ଲୋକମାନେ ଦୌଲତାବାଦକୁ ଯିବାକୁ ବହୁତ କଷ୍ଟ ପାଉଥିଲେ । ଦୌଲତାବାଦରେ ଶାସନ ଚଳାଇବାପାଇଁ ସୁବିଧା ନଥିବାରୁ ସେ ରାଜଧାନୀ ପୁନର୍ବାର ଦିଲ୍ଲୀକୁ ଉଠାଇ ଆଣିଲେ । ରାଜଧାନୀ ବାରମ୍ବାର ପରିବର୍ତ୍ତନ କରିବାଦ୍ୱାରା ବହୁତ ବୃଥା ଖର୍ଚ୍ଚ ହେଲା ।

**ଦୋଆବରେ କରଧାର୍ଯ୍ୟ** :—ମହମ୍ମଦ ତୋଗଲକ ରାଜ୍ୟ-ଜୟ, ରାଜ୍ୟରକ୍ଷା ଓ ରାଜଧାନୀ ପରିବର୍ତ୍ତନରେ ବହୁ ଅର୍ଥ ବ୍ୟୟ କରିବାରୁ ଅର୍ଥାଭାବ ହେଲା । ଦୋଆବ ଅଞ୍ଚଳ ଉର୍ବର ଥିବାରୁ ଓ ସେଠାର ଲୋକମାନେ ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଥିବାରୁ ସେ ସେଠାରୁ ବେଶୀ କର ଆଦାୟ କରିବାପାଇଁ ଆଦେଶ ଦେଲେ । ସେତେବେଳେ ଦୋଆବରେ ଦୁର୍ଭିକ୍ଷ ପଡ଼ିଥିଲା । ତେଣୁ ଲୋକମାନେ କର ନ ଦେଇ ଘରଦ୍ୱାର ଛାଡ଼ି ପଳାଇଗଲେ ।

**ତାମ୍ରମୁଦ୍ରା ପ୍ରଚଳନ** :—ଅର୍ଥାଭାବ ଦୂର କରିବାପାଇଁ ସେ ରୌପ୍ୟମୁଦ୍ରା ପରିବର୍ତ୍ତରେ ତାମ୍ରମୁଦ୍ରା ଚଳାଇଥିଲେ । ତାଙ୍କର ଯୋଜନା ମହତ ଥିଲେ ମଧ୍ୟ ଲୋକେ ତାମ୍ରମୁଦ୍ରା ଜାଲ କରିବାରୁ ଓ ବିଦେଶୀମାନେ

ସେଗୁଡ଼ିକ ନ ନେବାରୁ ବାଣିଜ୍ୟ ଓ ଅର୍ଥନୀତିରେ ବିଭ୍ରାଟ ଘଟିଲା । ତେଣୁ ତାମ୍ରମୁଦ୍ରା ଚଳିବା ବନ୍ଦ କରିଥିଲେ ।

ଅର୍ଥାଭାବରେ ଓ ବିଶୃଙ୍ଖଳା ହେତୁ ଦେଶରେ ବିଦ୍ରୋହ ଦେଖାଗଲା । ଖ୍ରୀ: ୧୩୩୬ରେ ବିଜୟ ନଗର ଓ ଖ୍ରୀ: ୧୩୫୧ରେ ବାହମନୀ ରାଜ୍ୟ ସ୍ଥାପିତ ହୋଇଥିଲା । ସେ ସିନ୍ଧୁଦେଶରେ ବିଦ୍ରୋହ ଦମନ କରୁଥିବାବେଳେ ପ୍ରାଣତ୍ୟାଗ କରିଥିଲେ । ତାଙ୍କ ସମୟରେ ମରକୋବାସୀ **ଇବନ୍‌ବାତୁତା** ଭାରତରେ ବୁଲି ଭାରତ ବିଷୟରେ ଗୋଟିଏ ବିବରଣୀ ଲେଖିଯାଇ ଅଛନ୍ତି ।

**ଫିରୋଜ ତୋଗଲକ** (ଖ୍ରୀ: ୧୩୫୧—ଖ୍ରୀ: ୧୩୮୮):—ମହମ୍ମଦ ତୋଗଲକଙ୍କର ପରେ ତାଙ୍କ ଭାଇ ଫିରୋଜ ତୋଗଲକ ଦିଲ୍ଲୀର ସୁଲତାନ୍ ହେଲେ । ସେ ମୁସଲମାନମାନଙ୍କୁ ଭଲ ପାଉଥିଲେ ଓ ଦେଶରେ ବହୁତ ପାନ୍ଥଶାଳା, ଶିକ୍ଷାଗାର, ପୋଲ, ମସ୍‌ଜିଦ୍ ଓ ଚିକିତ୍ସାଳୟମାନ ନିର୍ମାଣ କରିଥିଲେ । କୃଷିର ଉନ୍ନତି ପାଇଁ ଅନେକ କେନାଲ ଖୋଳାଇଥିଲେ । ଦୁଇ ଶହ ମାଇଲ ଲମ୍ବର ଯମୁନା କେନାଲ ତାଙ୍କର କୀର୍ତ୍ତି । ସେ ଅନେକ ଅନ୍ୟାୟ କର ଓ ଅଙ୍ଗଚ୍ଛେଦ ଦଣ୍ଡ ଉଠାଇ ଦେଇଥିଲେ । ସୈନ୍ୟମାନଙ୍କୁ ଦରମା ପରିବର୍ତ୍ତେ ପୁଣି ଜାଗିର ଦେଇଥିଲେ ।

ତାଙ୍କ ମା ରାଜପୁତରମଣୀ ଥିଲେ ମଧ୍ୟ ସେ ହିନ୍ଦୁମାନଙ୍କଠାରୁ 'ଜିଜିୟାକର' ଅଦାୟ କରୁଥିଲେ ଓ ମନ୍ଦିରମାନ ଭାଙ୍ଗି ମସ୍‌ଜିଦ୍‌ମାନ ନିର୍ମାଣ କରିଥିଲେ ।

ତାଙ୍କର ବଂଶଧରମାନେ ଦୁର୍ବଳ ହେବାରୁ ଏହି ବଂଶର ଶେଷରାଜା ମାମୁଦଙ୍କ ସମୟରେ ତୈମୁରଲଙ୍ଗ ଭାରତ ଆକ୍ରମଣ କରିଥିଲେ ।

**ତୈମୁରଲଙ୍ଗଙ୍କର ଭାରତ ଆକ୍ରମଣ** :—ସମରକନ୍ଦର ଅମୀର ତୈମୁରଲଙ୍ଗ ମାମୁଦଙ୍କ ରାଜତ୍ବ ସମୟରେ ଖ୍ରୀ: ୧୩୯୮ ରେ ଭାରତ ଆକ୍ରମଣ କରିଥିଲେ । ସେ ଦିଲ୍ଲୀକୁ ଆସିବା ବାଟରେ ବହୁ ନଗର, ଗ୍ରାମ ଲୁଣ୍ଠନ କରିଥିଲେ ଏବଂ ବହୁତ ଲୋକଙ୍କୁ ହତ୍ୟା ଓ ବନ୍ଦୀ କରିଥିଲେ । ମାମୁଦ ପ୍ରାଣଭୟରେ ପଞ୍ଜାବକୁ ପଳାଇଲେ । ତୈମୁର ଦିଲ୍ଲୀ ସହରରେ ପଶି ପାଞ୍ଚଦିନକାଳ ହତ୍ୟା ଓ ଲୁଣ୍ଠନ ଚଳାଇ ଶେଷରେ ଦିଲ୍ଲୀକୁ ପୋଡ଼ି ପକାଇଲେ । ସେ ବହୁ ଧନରତ୍ନ ନେଇ ସ୍ବଦେଶକୁ ଫେରିଗଲେ । ଏହାପରେ ମାମୁଦ ଦିଲ୍ଲୀରେ



ନାମମାତ୍ର ସୁଲତାନ ହୋଇ ଖ୍ରୀ: ୧୪୧୩ରେ ପ୍ରାଣତ୍ୟାଗ କଲେ ଓ ତୋଗଲକ ବଂଶ ଲୋପ ପାଇଲା ।

ତୋଗଲକ ବଂଶ ପରେ ସୈୟଦ ବଂଶର ରାଜାମାନେ ଖ୍ରୀ: ୧୪୧୪ ଠାରୁ ଖ୍ରୀ: ୧୪୫୧ ପର୍ଯ୍ୟନ୍ତ ରାଜତ୍ବ କରିଥିଲେ । ସେମାନଙ୍କ ପରେ ଲୋଦି ବଂଶର ରାଜାମାନେ ଖ୍ରୀ: ୧୪୫୧ରୁ ଖ୍ରୀ: ୧୫୨୬ ପର୍ଯ୍ୟନ୍ତ ଦିଲ୍ଲୀ ସିଂହାସନରେ ବସିଥିଲେ । ଲୋଦିବଂଶର ଶେଷରାଜା ଇବ୍ରାହିମ୍ ଲୋଦି ଦେବୀ ଓ ଅତ୍ୟାଚାରୀ ଥିବାରୁ ତାଙ୍କର ପିତୃବ୍ୟ ଆଲମ ଖାଁ ଓ ପଞ୍ଜାବର ଶାସନକର୍ତ୍ତା ଦୌଲତ୍ ଖାଁ ଲୋଦି ଦିଲ୍ଲୀ ଆକ୍ରମଣ କରିବାକୁ ବାବରଙ୍କୁ ନିମନ୍ତ୍ରଣ କରିଥିଲେ । ଏହି ସୁଯୋଗ ନେଇ ବାବର ପ୍ରଥମ ପାନିପଥ ଯୁଦ୍ଧରେ ଇବ୍ରାହିମଙ୍କୁ ପରାସ୍ତ କରି ଦିଲ୍ଲୀ ସିଂହାସନ ଅଧିକାର କଲେ ।

---

# ଏକାଦଶ ଅଧ୍ୟାୟ

## ପଠାଣ ସାମ୍ରାଜ୍ୟର ପତନ ସମୟରେ ଭାରତର ଅବସ୍ଥା

**ରାଜନୈତିକ ଅବସ୍ଥା** :—**ଦିଲ୍ଲୀର** ସୁଲତାନମାନେ ପ୍ରଥମେ **ଶକ୍ତିଶାଳୀ** ଥିଲେ ମଧ୍ୟ ପରେ ଶାସନର ବିଶୃଙ୍ଖଳା ଓ ବିଳାସିତା ଯୋଗୁଁ **ଦୁର୍ବଳ** ହୋଇ ପଡ଼ିଲେ । ହିନ୍ଦୁମାନଙ୍କ ଉପରେ ଅତ୍ୟାଚାର, ରାଜପୁତମାନଙ୍କର ସ୍ୱାଧୀନ ହେବାର ଚେଷ୍ଟା, ମଙ୍ଗୋଲମାନଙ୍କର ବାରମ୍ବାର ଭାରତ ଆକ୍ରମଣ ଓ ମୁସଲମାନ ସୈନ୍ୟମାନଙ୍କ କାର୍ଯ୍ୟଦକ୍ଷତାର ଅଭାବ ଯୋଗୁଁ **ଦିଲ୍ଲୀ** ସୁଲତାନ୍‌ମାନଙ୍କର କ୍ଷମତା ଲୋପ ପାଇଲା । ପ୍ରାଦେଶିକ ଶାସନକର୍ତ୍ତାମାନେ ସ୍ୱାଧୀନ ହେଲେ ଓ **ଶକ୍ତିଶାଳୀ** ଲୋକମାନେ ନୂତନ ରାଜ୍ୟ ସ୍ଥାପନ କଲେ । ଏହି ନୂତନ ରାଜ୍ୟମାନଙ୍କ ମଧ୍ୟରେ ବିଜୟନଗର ଓ ବାହାମନୀ ରାଜ୍ୟ ପ୍ରଧାନ ।

**ବିଜୟ ନଗର** :—ହରିହର ଓ ବୁକ୍କା ନାମରେ ଦୁଇଭାଇ ଖ୍ରୀ: ୧୩୩୬ରେ ତୁଙ୍ଗଭଦ୍ରା ନଦୀର ଦକ୍ଷିଣରେ ଏହି ରାଜ୍ୟ ସ୍ଥାପନ କଲେ । ମୁସଲମାନ୍‌ମାନଙ୍କ ଅତ୍ୟାଚାରରୁ ହିନ୍ଦୁମାନଙ୍କୁ ରକ୍ଷାକରିବା ସେମାନଙ୍କର ଉଦ୍ଦେଶ୍ୟ ଥିଲା । କ୍ରମେ ଏହି ରାଜ୍ୟ ବଙ୍ଗୋପସାଗରଠାରୁ ଆରବସାଗର ଓ କୃଷ୍ଣାନଦୀଠାରୁ କୁମାରୀକା ଯାଏ ବ୍ୟାପିଥିଲା । ଏହି ରାଜ୍ୟରେ ବାଣିଜ୍ୟ ବ୍ୟବସାୟ, ଶିକ୍ଷା ଓ ଶିଳ୍ପକଳାର ବିଶେଷ ଉନ୍ନତି ହୋଇଥିଲା ।

ଏହି ରାଜ୍ୟର ପ୍ରଧାନ ରାଜା **କୃଷ୍ଣଦେବ ରାୟ** ଖ୍ରୀ: ୧୫୦୯ ରୁ ଖ୍ରୀ: ୧୫୨୯ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ଓଡ଼ିଶାର ରାଜା ପ୍ରତାପରୁଦ୍ର ଦେବଙ୍କୁ ପରାସ୍ତ କରି କୃଷ୍ଣାନଦୀର ଦକ୍ଷିଣରେ ଥିବା ଓଡ଼ିଆ ରାଜ୍ୟ ଦଖଲ କରିଥିଲେ । ସେ ବିଜାପୁର ଓ ଗୋଲକୁଣ୍ଡାର ସୈନ୍ୟମାନଙ୍କୁ ପରାସ୍ତ

କରିଥିଲେ ଓ ବାହାମଣୀ ରାଜ୍ୟର ରାଜଧାନୀ କଲବର୍ଗାକୁ ଧ୍ୱଂସ କରିଥିଲେ । ତାଙ୍କ ରାଜ୍ୟରେ ତେଲଗୁ ସାହିତ୍ୟ ଓ ବୈଷ୍ଣବ ଧର୍ମର ବିଶେଷ ଉନ୍ନତି ହୋଇଥିଲା । ତାଙ୍କର ବଂଶଧରମାନେ ଦୁର୍ବଳ ଥିବାରୁ ଖ୍ରୀ: ୧୫୬୫ରେ ତାଲିକୋଟା ଯୁଦ୍ଧରେ ବିଜାପୁର, ଗୋଲକୁଣ୍ଡା ପ୍ରଭୃତିର ମୁସଲମାନ୍ ରାଜାମାନେ ମିଳିତ ହୋଇ ବିଜୟନଗରର ସୈନ୍ୟମାନଙ୍କୁ ପରାସ୍ତ କରି ସେହି ରାଜ୍ୟର ରାଜଧାନୀ ଧ୍ୱଂସ କରିଥିଲେ ।

**ବାହାମନୀ ରାଜ୍ୟ** :—ମହମ୍ମଦ ତୋଗଲଙ୍କ ସମୟରେ ଖ୍ରୀ: ୧୩୪୭ରେ ହାସାନ ବାହାମନୀ ରାଜ୍ୟ ସ୍ଥାପନ କରିଥିଲେ । ପ୍ରଥମେ କଲବର୍ଗା ଓ ପରେ ବିଦର ଏହାର ରାଜଧାନୀ ହେଲା । ଏହି ରାଜ୍ୟ ଆରବସାଗରରୁ ଉଆରଙ୍ଗଲ୍ ଓ ବେରାରଠାରୁ କୃଷ୍ଣାନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । କାଳକ୍ରମେ ଏହି ରାଜ୍ୟଟି ଅହମ୍ମଦନଗର, ବିଜାପୁର, ଗୋଲକୁଣ୍ଡା, ବେରାର ଓ ବିଦର ଏହି ପାଞ୍ଚ ରାଜ୍ୟରେ ବିଭକ୍ତ ହେଲା । ପ୍ରଥମେ ଏମାନେ ପରସ୍ପର ମଧ୍ୟରେ କଳିକରି ବିଜୟନଗରର ହିନ୍ଦୁରାଜାମାନଙ୍କର ସାହାଯ୍ୟ ନେଉଥିଲେ । ପରେ ମିଳିତ ହୋଇ ତାଲିକୋଟା ଯୁଦ୍ଧରେ ବିଜୟନଗରକୁ ଧ୍ୱଂସ କରିଥିଲେ ।

ଦିଲ୍ଲୀର ସୁଲତାନ୍‌ମାନେ ଦୁର୍ବଳ ହୋଇଯିବାରୁ ଜୋନପୁର, ବଙ୍ଗଳା, ଗୁଜରାଟ, ଖାନ୍ଦେଶ ଓ ମିବାର ପ୍ରଭୃତି ରାଜ୍ୟ ସ୍ୱାଧୀନ ହୋଇଥିଲା । ଓଡ଼ିଶା ସେହି ସମୟରେ ସ୍ୱାଧୀନତା ରକ୍ଷାକରିଥିବା ଗୌରବର ବିଷୟ ।

**ଆର୍ଥିକ ଅବସ୍ଥା** :—ଇବନ୍‌ବାତୁତା, ଅବ୍‌ଦୁର ରଜାକ୍ ପ୍ରଭୃତି ବିଦେଶୀ ପରିବ୍ରାଜକମାନଙ୍କର ନିମ୍ନଲିଖିତ ତାଲିକାରୁ ସେ ସମୟର ଦେଶର ଆର୍ଥିକ ଅବସ୍ଥା ଖୁବ୍ ଭଲ ଥିଲା ବୋଲି ଜଣାପଡ଼େ । ସେମାନେ ଲେଖିଛନ୍ତି "ଗହମ ମହଣ ଦୁଇଅଣା, ଘିଅ ମହଣ ଏକଟଙ୍କା ସାତଅଣା,

ଚାଉଳ ଲଗା ୨୦ ଟଙ୍କାକୁ ଦୁଇଟଙ୍କା, ଟାଇ ଗୋଟିକୁ ତିନିଟଙ୍କା ଓ ମେଣ୍ଢାଟିର ଦାମ ଚାରିଅଣା ।"

**ଶାସନ** :—ଦିଲ୍ଲୀ ସୁଲତାନ୍‌ମାନଙ୍କର ବହୁତ କ୍ଷମତା ଥିଲା । ସେମାନଙ୍କର ଚରିତ୍ର ଓ ଶକ୍ତି ଉପରେ ଶାସନର ଭଲମନ୍ଦ ନିର୍ଭର କରୁଥିଲା । ସେ ସମୟରେ ଗ୍ରାମର ପଞ୍ଚାୟତଗୁଡ଼ିକ କର ଆଦାୟ କରି ରାଜପ୍ରତିନିଧି-ମାନଙ୍କୁ ଦେଉଥିଲେ ଓ ଗ୍ରାମର ଭଲମନ୍ଦ ବୁଝୁଥିଲେ ।

**ଧର୍ମ ଓ ସମାଜ** :—ହିନ୍ଦୁମାନଙ୍କୁ ନୃଶଂସଭାବରେ ହତ୍ୟାକରିବା ଓ ହିନ୍ଦୁଧର୍ମ ଲୋପ କରିବା ପ୍ରଥମେ ଦିଲ୍ଲୀ ସୁଲତାନମାନଙ୍କର ଉଦ୍ଦେଶ୍ୟ ଥିଲା । ସେମାନେ ଦୁର୍ବଳ ହୋଇଯିବାପରେ ଓ ହିନ୍ଦୁ ମୁସଲମାନ୍‌ମାନେ ବହୁଦିନ ଏକତ୍ର ବାସକରିବା ଫଳରେ ସେମାନଙ୍କ ମଧ୍ୟରେ କ୍ରମେ ସଦ୍ଭାବ ସ୍ଥାପିତ ହୋଇଥିଲା । ଏହି ସମୟରେ ରାମାନନ୍ଦ, କବୀର, ଚୈତନ୍ୟ ଓ ନାନକ ପ୍ରଭୃତି ସଂସ୍କାରକମାନେ ହିନ୍ଦୁଧର୍ମକୁ ସରଳ ଭାଷାରେ ପ୍ରଚାର କରିଥିଲେ ।

## ଅନୁଶୀଳନୀ

୧ । ନିମ୍ନଲିଖିତ ବାକ୍ୟମାନଙ୍କରେ ଥିବା ଶୂନ୍ୟସ୍ଥାନଗୁଡ଼ିକ ଉପଯୁକ୍ତ ଐତିହାସିକ ଲୋକମାନଙ୍କ ଦ୍ୱାରା ପୂର୍ଣ୍ଣ କର :—

(କ)—କୁତବମିନାର ନିର୍ମାଣ କାର୍ଯ୍ୟ ଆରମ୍ଭକରିଥିଲେ ଓ — ତାହା ଶେଷ କରିଥିଲେ ।

(ଖ) ବିଜୟୀ ଅଲ୍ଲାଉଦ୍ଦିନ୍‌ଙ୍କୁ — ଆନନ୍ଦରେ ଆଲିଙ୍ଗନ କଲାବେଳେ ବିଶ୍ୱାସଘାତକ ଓ କୃତଘ୍ନ — ତାଙ୍କୁ ହତ୍ୟା କରିଥିଲେ ।

(ଗ) ଅଲ୍ଲାଉଦ୍ଦିନ୍ ଚିତୋର ପୁଣି — ଆକ୍ରମଣ କଲେ, — ହାରିଗଲେ । — ନିଆଁରେ ଝାସ ଦେଲେ ।

(ଘ) ସମରଖନ୍ଦର ଅମୀର —ମାମୁଦଙ୍କ ରାଜତ୍ୱ ସମୟରେ ଖ୍ରୀଃ — ରେ ଭାରତ ଆକ୍ରମଣ କରିଥିଲେ ।

୨ । ନିମ୍ନଲିଖିତ ଘଟଣାଗୁଡ଼ିକୁ କାଳର କ୍ରମ ଅନୁସାରେ ସଜାଇ ରଖ :—ତୈମୁରଙ୍କର ଭାରତ ଆକ୍ରମଣ, ଅଲ୍ଲାଉଦ୍ଦିନଙ୍କର ଦେବଗିରି ଜୟ, ଜଲାଲଉଦ୍ଦିନ୍‌ଙ୍କର ମୃତ୍ୟୁ, ଅଲ୍‌ତାମସ୍‌ଙ୍କର ମୃତ୍ୟୁ, କୁତବମିନାର ନିର୍ମାଣ ।

୩ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ :—

(କ) ଇବନ୍‌ବାତୁତା କିଏ ?

(ଖ) ଅମୀର ଖୁସ୍ରୁ କିଏ ?

(ଗ) କେଉଁ ମୁସଲମାନ୍ ଶାସନକର୍ତ୍ତା ପ୍ରଥମେ ଦାକ୍ଷିଣାତ୍ୟ ଆକ୍ରମଣ କରିଥିଲେ ?

(ଘ) ବାହାମନୀ ରାଜ୍ୟ କେତୋଟି ରାଜ୍ୟରେ ବିଭକ୍ତ ହୋଇଥିଲା ?

---

# ଦ୍ୱିତୀୟ ଭାଗ

## ଦ୍ୱାଦଶ ଅଧ୍ୟାୟ

### ମୋଗଲ ସମ୍ରାଟଗଣ

**ବାବର** (ଖ୍ରୀ: ୧୫୨୬—ଖ୍ରୀ: ୧୫୩୦) :—ତୈମୁରଲଙ୍ଗଙ୍କର ବଂଶଧର ବାବର ୧୨ ବର୍ଷ ବୟସରେ ଖ୍ରୀ: ୧୪୯୪ ରେ ଫର୍ଗନା ରାଜ୍ୟର ରାଜା ହେଲେ । ସେ ଦୁଇବର୍ଷ ପରେ ସମରକନ୍ଦ ଜୟ କଲେ । ପରେ ଦୁଇଟିଯାକ ରାଜ୍ୟ ହରାଇ ନିରାଶ୍ରୟ ଭାବରେ ବୁଲିଲେ । ସେ ଖୋରାସାନର ରାଜାଙ୍କ ସାହାଯ୍ୟରେ ଖ୍ରୀ: ୧୫୦୪ରେ କାବୁଲ୍ ଓ ଖ୍ରୀ: ୧୫୦୫ରେ ଗଜନୀ ଅଧିକାର କଲେ । ଭାରତର ଧନ ସମ୍ପଦ କଥା ଶୁଣି ସେ ଭାରତ ଜୟ କରିବାକୁ ଇଚ୍ଛା କରିଥିଲେ ।

ଦୌଲତ ଖାଁ ଓ ଇବ୍ରାହିମ୍‌ଙ୍କର ପିତୃବ୍ୟ ଅଲମ୍‌ଖାଁଙ୍କର ନିମନ୍ତ୍ରଣ ପାଇ ବାବର ଖ୍ରୀ: ୧୫୨୪ ରେ ଇବ୍ରାହିମ୍‌ଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା କଲେ । ସେ ଲାହୋର ଅଧିକାର କରିବାରୁ ଦୌଲତ ଖାଁ ବାବରଙ୍କର ଭାରତରେ ସାମ୍ରାଜ୍ୟସ୍ଥାପନ ଅଭିପ୍ରାୟ ବୁଝିପାରି ତାଙ୍କୁ ତଡ଼ିବାକୁ ଚେଷ୍ଟା କରିଥିଲେ । ବାବର ଫେରିଗଲେ ଓ ଖ୍ରୀ: ୧୫୨୫ ରେ ବାର ହଜାର ସୈନ୍ୟ ଘେନି ପୁଣି ଇବ୍ରାହିମଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା କଲେ । ପଞ୍ଜାବ ତାଙ୍କର ହସ୍ତଗତ ହେଲା ଓ ଦୌଲତ୍ ଖାଁ ବଶ୍ୟତା ସ୍ୱୀକାର କଲେ । ଖ୍ରୀ: ୧୫୨୬ ରେ ପାନିପଥଠାରେ ଇବ୍ରାହିମ୍ ଲୋଦିଙ୍କ ସଙ୍ଗେ ବାବରଙ୍କର ଭୀଷଣ ଯୁଦ୍ଧ ହେଲା । ବାବରଙ୍କର ସୈନ୍ୟମାନେ ତୋପ, ଗୁଳା ବାରୁଦ ସାହାଯ୍ୟରେ ଯୁଦ୍ଧ କରୁଥିଲେ କିନ୍ତୁ ଭାରତୀୟ-



ମାନେ ସେସବୁର ବ୍ୟବହାର ଜାଣି ନଥିଲେ । ବାବରଙ୍କର ସୈନ୍ୟମାନେ ଦ୍ରୁତଗାମୀ ଅଶ୍ୱମାନଙ୍କ ଦ୍ୱାରା ଇବ୍ରାହିମଙ୍କର ହସ୍ତୀମାନଙ୍କୁ ବିବ୍ରତ କରିବାରୁ ଇବ୍ରାହିମ ପ୍ରଥମ ପାନିପଥ ଯୁଦ୍ଧରେ ପରାସ୍ତ ଓ ନିହତ ହେଲେ । ଏହାପରେ ବାବର ଦିଲ୍ଲୀ ଓ ଆଗ୍ରା ଅଧିକାର କରି ମୋଗଲ ସାମ୍ରାଜ୍ୟର ମୂଳଭିତ୍ତି ସ୍ଥାପନ କଲେ ।

**ଖାନୁଆ ଯୁଦ୍ଧ** :—ମିବାରର ରାଣା ସଂଗ୍ରାମ ସିଂହ ବା ରାଣା ସଙ୍ଗ ଭଲ ଯୋଦ୍ଧା ଥିଲେ । ଯୁଦ୍ଧରେ ସେ ଗୋଟିଏ ହାତ, ଗୋଟିଏ ଗୋଡ଼ ଓ ଗୋଟିଏ ଆଖି ହରାଇଥିଲେ ଓ ତାଙ୍କ ଦେହରେ ଅଶୀଟି କ୍ଷତଚିହ୍ନ ଥିଲା । ରାଣା ସଙ୍ଗ ଭାବିଥିଲେ ବାବର ଭାରତ ଲୁଣ୍ଠନକରି ଫେରିଯିବେ ଓ ସେ ନିଜେ ଭାରତରେ ଗୋଟିଏ ହିନ୍ଦୁରାଜ୍ୟ ପ୍ରତିଷ୍ଠା କରିବେ । ତାହା ନ ହେବାରୁ ସେ ଖ୍ରୀ: ୧୫୨୭ରେ ଫତେପୁର ସିକ୍ରି ନିକଟସ୍ଥ ଖାନୁଆଠାରେ ବାବରଙ୍କ ସହିତ ଭୀଷଣ ଯୁଦ୍ଧ କରିଥିଲେ । ସେ ପରାସ୍ତ ହେଲେ ଓ ଭାରତରେ ବାବରଙ୍କର କ୍ଷମତା ଦୃଢ଼ ହେଲା ।

**ରାଜ୍ୟ ବିସ୍ତାର** :—ତା ପରବର୍ଷ ବାବର ମାଳବ ରାଜାଙ୍କଠାରୁ ଚନ୍ଦେରୀ ଦୁର୍ଗ ଅଧିକାର କଲେ । ବିହାରର ନବାବ ମହମ୍ମଦ ଲୋଦିଙ୍କୁ ଆଶ୍ରୟ ଦେଇଥିବାରୁ ବାବର ବିହାର ଆକ୍ରମଣ କରିଥିଲେ । ଘର୍ଘରାଯୁଦ୍ଧରେ ବିହାରର ନବାବ ପରାସ୍ତ ହେଲେ ଓ ପଶ୍ଚିମ ବିହାର ବାବରଙ୍କ ରାଜ୍ୟରେ ମିଶିଲା । ବାବରଙ୍କର ରାଜ୍ୟ ପଶ୍ଚିମରେ କାବୁଲଠାରୁ ପୂର୍ବରେ ବଙ୍ଗଳା ଓ ଉତ୍ତରରେ ହିମାଳୟଠାରୁ ଦକ୍ଷିଣରେ ବିନ୍ଧ୍ୟପର୍ବତ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା ।

**ଶେଷ ଜୀବନ** :—ବାବର ଖ୍ରୀ: ୧୫୩୦ରେ ପ୍ରାଣତ୍ୟାଗ କଲେ । ତାଙ୍କ ବିଜୟର ଫଳ ସେ ଭୋଗି ପାରି ନ ଥିଲେ । ବାବରଙ୍କ

ମୃତ୍ୟୁ ସମ୍ବନ୍ଧରେ ଗୋଟିଏ ଗଳ୍ପ ଅଛି । ତାଙ୍କର ବଡ଼ପୁଅ ହୁମାୟୁନ କଠିନ ରୋଗରେ ପଡ଼ିଥିଲେ । ବାବର ଭଗବାନଙ୍କୁ ପ୍ରାର୍ଥନା କଲେ, "ପ୍ରଭୋ ! ହୁମାୟୁନର ରୋଗ ମୋତେ ଦେଇ ତା'କୁ ଆରୋଗ୍ୟ କର ।" ସେହିଦିନଠାରୁ ହୁମାୟୁନ ରୋଗମୁକ୍ତ ହେଲେ ଓ ବାବର ପୀଡ଼ିତ ହୋଇ ପ୍ରାଣ ହରାଇଲେ ।

**ଚରିତ୍ର** :—ବାବର ସୁଦକ୍ଷ ଯୋଦ୍ଧା, ଅଶ୍ୱାରୋହୀ, ସାହସୀ, ଅଧ୍ୟବସାୟୀ, ପୁତ୍ରବତ୍ସଳ, ଦୟାଳୁ, ଦାନଶୀଳ, ଉଦାରମନା, ସାହିତ୍ୟିକ, ଚିତ୍ରକର, ସଙ୍ଗୀତଜ୍ଞ ଓ ବଡ଼ ପ୍ରକୃତିପ୍ରିୟ ଥିଲେ । ସେ ହିନ୍ଦୁମାନଙ୍କ ପ୍ରତି ସଦୟ ବ୍ୟବହାର କରୁଥିଲେ । ସେ ତୁର୍କି ଭାଷାରେ ତାଙ୍କର ଯେଉଁ ଜୀବନ-ଚରିତ ଲେଖିଥିଲେ ତାହା ଉଚ୍ଚଦରର ସାହିତ୍ୟ ।



**ହୁମାୟୁନ** (ଖ୍ରୀ: ୧୫୩୦—ଖ୍ରୀ: ୧୫୪୦):—ହୁମାୟୁନ ସମ୍ରାଟ୍ ହେବାପରେ ପିତାଙ୍କ ଆଦେଶ ଅନୁସାରେ ଭାଇମାନଙ୍କୁ ନିଜ ରାଜ୍ୟରୁ କେତେକ ଅଂଶ ଦେଇଥିଲେ । କାବୁଲ ଓ କାନ୍ଦାହାର କାମରାନ୍‌ଙ୍କ ଭାଗରେ ପଡ଼ିଥିଲା । ଅଳ୍ପଦିନରେ କାମରାନ୍ ପଞ୍ଜାବ ଆକ୍ରମଣ କରିବାକୁ ଭୟ ଦେଖାଇବାରୁ ହୁମାୟୁନ ତାଙ୍କୁ ପଞ୍ଜାବ ଛାଡ଼ିଦେଲେ । ଏସବୁ କାମରାନ୍‌ଙ୍କ ହାତରେ ପଡ଼ିବାରୁ ହୁମାୟୁନ ବହୁତ ସୈନ୍ୟ ପାଇ ନ ପାରି ଦୁର୍ବଳ ହୋଇପଡ଼ିଲେ ।

**ଦେଶରେ ବିଦ୍ରୋହ** :—ଗୁଜରାଟର ଶାସକ ବାହାଦୁର ସାହ ମାଳବ ଅଧିକାର କରିବାରୁ ହୁମାୟୁନ ସେଠାକୁ ଯାଇ ବିଦ୍ରୋହ ଦମନ କରିଥିଲେ। ସେତେବେଳେ ବିହାରର ଶାସକ ଶେରଖାଁ ବଙ୍ଗଳା ଅଧିକାର କରିବାରୁ ହୁମାୟୁନ ବିଦ୍ରୋହ ଦମନପାଇଁ ବଙ୍ଗଳା ଯାଇଥିଲେ । ବାହାଦୁର ସାହ ପୁଣି ଗୁଜରାଟ ଓ ମାଳବ ଦଖଲ କଲେ । ଶେରଖାଁ ବଙ୍ଗଳାରେ ହୁମାୟୁନ୍‌ଙ୍କୁ ବାଧା ଦେଇ ନ ଥିଲେ । ସେ ହୁମାୟୁନଙ୍କୁ ଦିଲ୍ଲୀ ଫେରିବା ବାଟରେ ଖ୍ରୀ: ୧୫୩୯ରେ ଚୌସାଠାରେ ପରାସ୍ତ କଲେ । ତା ପରବର୍ଷ ପୁଣି କନୌଜଠାରେ ସେ ହୁମାୟୁନଙ୍କୁ ପରାସ୍ତକରି ଦିଲ୍ଲୀ ଓ ଆଗ୍ରା ଅଧିକାର କଲେ । ହୁମାୟୁନ ପ୍ରାଣ ନେଇ ପଳାଇଲେ । ବାଟରେ ଅମରକୋଟଠାରେ ଖ୍ରୀ: ୧୫୪୨ ରେ ତାଙ୍କର ପୁଅ ଅକବର ଜନ୍ମ ହୋଇଥିଲେ । ହୁମାୟୁନ ଦିଲ୍ଲୀ ଅଧିକାର କରିବାପାଇଁ କାମରାନ୍‌ଙ୍କଠାରୁ ସାହାଯ୍ୟ ନ ପାଇ ନିଜ ସ୍ତ୍ରୀ ଓ ପୁଅଙ୍କୁ ତାଙ୍କ ପାଖରେ ଛାଡ଼ି ପାରସ୍ୟର ବାଦସାହଙ୍କର ଆଶ୍ରୟ ନେଲେ ।

---

# ତ୍ରୟୋଦଶ ଅଧ୍ୟାୟ

## ସୁରବଂଶ ( ଖ୍ରୀ: ୧୫୪୦—ଖ୍ରୀ: ୧୫୫୫ )

**ଶେରଶାହ** (ଖ୍ରୀ: ୧୫୪୦—ଖ୍ରୀ: ୧୫୪୫) :—ଶେରଶାହ କନୌଜଠାରେ ହୁମାୟୁନଙ୍କୁ ପରାସ୍ତ କରି ସମ୍ରାଟ୍ ହେଲେ ଓ ସୁରବଂଶ ସ୍ଥାପନ କଲେ ।

**ବାଲ୍ୟଜୀବନ** :—ଶେରସାହ ବିହାରର ସସରାମର ଜାଗିର-ଦାରଙ୍କର ପୁଅ । ତାଙ୍କର ପିଲାବେଳର ନାମ ଫରିଦ । ସାବତମାଙ୍କ ଦୁର୍ବ୍ୟବହାର

ଯୋଗୁଁ ସେ ଜୌନପୁର ପଳାଇଯାଇ ସେଠାରେ ଆରବୀ ଓ ପାର୍ଶୀ ଭାଷାରେ ପଣ୍ଡିତ ହୋଇଥିଲେ ଓ ସାହିତ୍ୟ, ଦର୍ଶନ ଓ ଗଣିତ ପ୍ରଭୃତିରେ ପାରଦର୍ଶୀତା ଲାଭ କରିଥିଲେ । ସେ ବିହାରର ସୁଲତାନଙ୍କ ଅଧୀନରେ ଚାକିରି କଲାବେଳେ ସୁଲତାନଙ୍କୁ ବାଘମୁହଁରୁ ରକ୍ଷାକରି 'ଶେର୍ ଖାଁ' ଉପାଧି ପାଇଥିଲେ ।

**ରାଜ୍ୟବିସ୍ତାର** :—ଶେରଶାହ ବାବରଙ୍କ ପାଖରେ ଚାକିରି କରିଥିଲେ ତାଙ୍କ ସାହାଯ୍ୟରେ ସେ ସସାରାମର ଜାଗିର ପାଇଲେ । ସେ ବିହାରର



ନାବାଳକ ରାଜାଙ୍କର ଶିକ୍ଷକ ଥିଲାବେଳେ ସବୁ କ୍ଷମତା ହାତକୁ ନେବାରୁ ନାବାଳକ ରାଜା ବଙ୍ଗଳା ନବାବଙ୍କର ଆଶ୍ରୟ ନେଲେ । ଶେରଖାଁ ନବାବଙ୍କୁ ପରାସ୍ତ କରି ବଙ୍ଗ ଅଧିକାର କରିବାରୁ ହୁମାୟୁନ ତାଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା କଲେ । ଶେର ଖାଁ ଚୁନାର୍ ଓ ରୋହଟାସ୍ ଦୁର୍ଗ ଅଧିକାର କରି ହୁମାୟୁନଙ୍କୁ ଚୌସା ଓ କନୌଜଠାରେ ପରାସ୍ତ କରି ଶେରଶାହ ନାମ ଧରି ଦିଲ୍ଲୀ-ସିଂହାସନରେ ବସିଲେ । ସେ ମାଳବ, ସିନ୍ଧୁ, ପଞ୍ଜାବ, ଗୁଜରାଟ ଓ ରାଜପୁତାନାର ଅନେକ ଅଂଶ ଜୟ କରିଥିଲେ । କାଲିଞ୍ଜର ଦୁର୍ଗ ଅବରୋଧ ବେଳେ ସେ ଖ୍ରୀ: ୧୫୪୫ ରେ ବାରୁଦ ନିଆଁରେ ପୋଡ଼ିହୋଇ ମଲେ ।

**ଶାସନ** :—ଶେରଶାହ ପାଞ୍ଚବର୍ଷ ମାତ୍ର ରାଜତ୍ୱ କରିଥିଲେ ମଧ୍ୟ ଭାରତର ଜଣେ ପ୍ରସିଦ୍ଧ ନରପତି ବୋଲି ପରିଗଣିତ ହୁଅନ୍ତି । ଭାରତର ବେଶୀ ଲୋକ ହିନ୍ଦୁ ଥିବାରୁ ସେ ସେମାନଙ୍କୁ ଉଚ୍ଚ ରାଜକାର୍ଯ୍ୟରେ ନିଯୁକ୍ତ କରିଥିଲେ ଓ ହିନ୍ଦୁମାନଙ୍କର ବିଦ୍ୟାଳୟଗୁଡ଼ିକୁ ସାହାଯ୍ୟ ଦେଇଥିଲେ ।

ଶାସନର ସୁବିଧାପାଇଁ ସେ ତାଙ୍କ ରାଜ୍ୟକୁ ୪୭ଟି ସରକାରରେ ବିଭକ୍ତ କରି ପ୍ରତ୍ୟେକ ସରକାରକୁ କେତେକ ପ୍ରଗଣାରେ ବିଭକ୍ତ କରିଥିଲେ । ସେ ସରକାର ଓ ପ୍ରଗଣାରେ ରାଜସ୍ୱ ଅଦାୟ, ନ୍ୟାୟ ବିଚାର ଓ ସୈନ୍ୟଚାଳନା ପାଇଁ ବିଭିନ୍ନ କର୍ମଚାରି ନିଯୁକ୍ତ କରିଥିଲେ । ତାଙ୍କ ରାଜସ୍ୱ ମନ୍ତ୍ରୀ ତୋଡରମଲ୍ଲଙ୍କ ଦ୍ୱାରା ଦେଶରେ ଭୂବନ୍ଦୋବସ୍ତ କରି କରଧାର୍ଯ୍ୟ କରିଥିଲେ । ପଟ୍ଟା ଓ କବୁଲିୟତ୍ ପ୍ରଥା ଚଳାଇ ପ୍ରଜାଙ୍କଠାରୁ ଜମି ଅମଳର ଏକଚତୁର୍ଥାଂଶ କର ନେଉଥିଲେ । କୃଷିପାଇଁ ରାଜକୋଷରୁ ସାହାଯ୍ୟ ମିଳୁଥିଲା । ସେ ତାମ୍ରମୁଦ୍ରା ଓ ରୌପ୍ୟମୁଦ୍ରା ଚଳାଇଥିଲେ । ସୈନ୍ୟବିଭାଗର ସଂସ୍କାର କରି ଜାଗିର ପରିବର୍ତ୍ତେ ବେତନ ଦେଉଥିଲେ । ଦେଶର ଖବର ଜାଣିବାପାଇଁ ଘୋଡ଼ାଦ୍ୱାରା ଡାକ ନେବା ଆଣିବା ପ୍ରଥା ଚଳାଇଥିଲେ । ସେ ପୋଲିସ ବିଭାଗର ସୁବନ୍ଦୋବସ୍ତ କରି କଡ଼ା ଆଇନ ଜାରି କରିବାରୁ ଦେଶରେ ଚୋର ଡକାୟତି କମି ଯାଇଥିଲା । ସେ ରାସ୍ତାମାନ ନିର୍ମାଣକରି ରାସ୍ତାକଡ଼ରେ ପାନ୍ଥଶାଳାମାନ ବସାଇଥିଲେ । ବଙ୍ଗଳାଠାରୁ ପଞ୍ଜାବ ପର୍ଯ୍ୟନ୍ତ **ଗ୍ରାଣ୍ଡ୍ ଟ୍ରଙ୍କ୍ ରୋଡ଼୍** ତାଙ୍କର କୀର୍ତ୍ତି ।

**ସୁରବଂଶର ପତନ** :—ଶେରଶାହଙ୍କ ବଂଶଧରମାନେ ଦୁର୍ବଳ ଥିବାରୁ ହୁମାୟୁନ ପାରସ୍ୟରାଜାଙ୍କଠାରୁ କିଛି ସୈନ୍ୟ ଆଣି ସୁରବଂଶର ଶେଷରାଜା ସିକନ୍ଦରଙ୍କୁ ସାରହିନ୍ଦଠାରେ ପରାସ୍ତ କରି ଖ୍ରୀ: ୧୫୫୫ ରେ ଦିଲ୍ଲୀସିଂହାସନ ଦଖଲ କଲେ ।

---

# ଚତୁର୍ଦ୍ଦଶ ଅଧ୍ୟାୟ

## ମୋଗଲ ସମ୍ରାଟଗଣ

**ହୁମାୟୁନ୍** (ଖ୍ରୀ: ୧୫୫୫—ଖ୍ରୀ: ୧୫୫୬) :—ସେ ଦ୍ୱିତୀୟବାର ଦିଲ୍ଲୀର ସମ୍ରାଟ୍ ହେଲେ ମଧ୍ୟ ବେଶୀଦିନ ରାଜତ୍ୱ କରିପାରି ନଥିଲେ । ତାଙ୍କ ପୁସ୍ତକାଳୟର ସିଢ଼ିରୁ ଖସିପଡ଼ି ସେ ଖ୍ରୀ: ୧୫୫୬ ରେ ପ୍ରାଣତ୍ୟାଗ କଲେ ।

**ଆକବର** (ଖ୍ରୀ: ୧୫୫୬—ଖ୍ରୀ: ୧୬୦୫)

ହୁମାୟୁନଙ୍କ ମୃତ୍ୟୁପରେ ଅକବର ତେରବର୍ଷରେ ଖ୍ରୀ: ୧୫୫୬ରେ ଦିଲ୍ଲୀ ସିଂହାସନରେ ବସିଥିଲେ । ହୁମାୟୁନଙ୍କର ବିଶ୍ୱସ୍ତ ଭୃତ୍ୟ ବୈରାମ ଖାଁ ତାଙ୍କର ଅଭିଭାବକରୂପେ ରାଜ୍ୟ ଚଳାଉଥିଲେ ।

**ଦ୍ୱିତୀୟ ପାନିପଥ ଯୁଦ୍ଧ** :— ହିମୁ ସୁରବଂଶର ଜଣେ ରାଜାଙ୍କର ମନ୍ତ୍ରୀ ଥିଲେ । ସେ ହିନ୍ଦୁ ଥିବାରୁ ଭାରତରେ ହିନ୍ଦୁରାଜ୍ୟ ପ୍ରତିଷ୍ଠା କରିବାପାଇଁ ବଙ୍ଗଳାରୁ ଆସି ଦିଲ୍ଲୀ ଓ ଆଗ୍ରା ଦଖଲ୍ କରି 'ବିକ୍ରମାଦିତ୍ୟ' ଉପାଧି ଧାରଣ କଲେ ।

ଖ୍ରୀ: ୧୫୫୬ରେ ପାନିପଥଠାରେ ହିମୁ ଅକବରଙ୍କଦ୍ୱାରା ପରାସ୍ତ ହୋଇ ବନ୍ଦୀ ଓ ନିହତ ହେଲେ । ପାନିପଥଠାରେ ମୋଗଲମାନେ ଦ୍ୱିତୀୟ ଥର ବିଜୟୀ ହେଲେ । ଭାରତରେ ମୋଗଲ ସାମ୍ରାଜ୍ୟ ଦୃଢ଼ୀଭୂତ ହେଲା ।



**ବୈରାମ ଖାଁଙ୍କ ପତନ** :— ସେ ବଡ଼ ଗର୍ବୀ ଓ ଉଦ୍ଧତ ଥିଲେ । ଅକବର କୌଶଳରେ ରାଜ୍ୟଭାର ନିଜ ହାତକୁ ନେବାରୁ ବୈରାମ ଖାଁ ବିଦ୍ରୋହ


ଆକବରଙ୍କ ଅଧୀନରେ
ମୋଗଲ ସାମ୍ରାଜ୍ୟ
ଖ୍ରୀ: ଅ: ୧୬୦୦
କାବୁଲ
ଲାହୋର
ଦିଲ୍ଲୀ
ମୁଲତାନ
ଆଜମିର
ଆଗ୍ରା
ମୋ
ଗ
ଲ
ସା
ମ୍ରା
ଜ୍ୟ
ମାଳବ
ଏଲାହାବାଦ
ଗୁଜରାଟ
ବେରାର
ଆହମଦନଗର
ଗୋଲକୁଣ୍ଡା
ବିଜୟନଗର
ଭା ର ତ ମ ହା ସା ଗ ର

କଲେ । ବୈରାମ ଖାଁ ପରାସ୍ତ ହେଲେ ମଧ୍ୟ ଆକବର ତାଙ୍କୁ କ୍ଷମା ଦେଇ ମକ୍କାକୁ ତୀର୍ଥଯାତ୍ରା କରିବାପାଇଁ ଅନୁମତି ଦେଲେ । ସେ ମକ୍କାକୁ ଯିବା ବାଟରେ ତାଙ୍କର ଜଣେ ଶତ୍ରୁ ତାଙ୍କୁ ହତ୍ୟା କଲା ।

**ସାମ୍ରାଜ୍ୟବିସ୍ତାର** :—ଆକବର ନିଜର କ୍ଷୁଦ୍ର ରାଜ୍ୟ ବଢ଼ାଇବା-ପାଇଁ ପାର୍ଶ୍ୱବର୍ତ୍ତୀ ରାଜ୍ୟମାନଙ୍କୁ ଦଖଲ କରିବାକୁ ଇଚ୍ଛା କରିଥିଲେ । ତାଙ୍କର ସେନାପତି ଆସଫ୍ ଖାଁଙ୍କୁ ପଠାଇ ସେ ଖ୍ରୀ: ୧୫୬୪ ରେ ଗଡ଼ମଣ୍ଡଳକୁ ନିଜ ରାଜ୍ୟରେ ମିଶାଇଥିଲେ ।

ଆକବର ବୁଝିଥିଲେ ରାଜପୁତମାନେ ବୀର ଓ ଶାସନ ପରିଚାଳନାରେ ଉପଯୁକ୍ତ । ତେଣୁ ସେମାନଙ୍କ ସଙ୍ଗେ ବନ୍ଧୁତା ସ୍ଥାପନ କରିବାପାଇଁ ନିଜେ ଜୟପୁରର ରାଜକନ୍ୟାକୁ ବିବାହ କରି ନିଜ ପୁଅ ସେଲିମ୍‌ଙ୍କୁ ମାରବାରର ରାଜକନ୍ୟାଙ୍କ ସହିତ ବିବାହ କରାଇଥିଲେ । ବିହାରୀ ମଲ୍ଲ, ଭଗବାନ ଦାସ, ମାନସିଂହ, ତୋଡର ମଲ୍ଲ ଓ ବୀରବଲ ପ୍ରଭୃତି ରାଜପୁତମାନଙ୍କୁ ଉଚ୍ଚ ରାଜକାର୍ଯ୍ୟରେ ନିଯୁକ୍ତ କରିଥିଲେ । ଏମାନଙ୍କ ସାହାଯ୍ୟରେ ଆକବର ମୋଗଲସାମ୍ରାଜ୍ୟକୁ ବିସ୍ତାର ଓ ଦୃଢ଼ କରିଥିଲେ ।

**ମିବାର ଜୟ** :—ମିବାରର ରାଣା ଉଦୟ ସିଂହ ଆକବରଙ୍କର ବଶ୍ୟତା ସ୍ୱୀକାର ନ କରିବାରୁ ଖ୍ରୀ: ୧୫୬୭ରେ ସେ ମିବାରର ରାଜଧାନୀ



ଚିତୋର ଆକ୍ରମଣ କଲେ । ରାଣା ଉଦୟ ସିଂହ ବହୁକାଳ ଯୁଦ୍ଧ ପରେ ଚିତୋର ଛାଡ଼ି ଆରାବଲୀ ପର୍ବତକୁ ପଳାଇ ଯାଇ ସେଠାରେ ଉଦୟପୁର ନାମରେ ଗୋଟିଏ ନୂତନ ରାଜଧାନୀ ସ୍ଥାପନ କଲେ । **ଜୟମଲ୍ଲ** ଓ **ପୁତ୍ତା** ନାମରେ ଦୁଇଜଣ ରାଜପୁତ ସେନାପତି ମୋଗଲମାନଙ୍କ ସହିତ ଘୋର ଯୁଦ୍ଧକରି ନିହତ ହେଲେ । ରାଜପୁତ ରମଣୀମାନେ 'ଜହରବ୍ରତ' ଅବଲମ୍ବନ କଲେ ।

ଚିତୋର ଅଧିକୃତ ହେଲା । ଜୟମଲ୍ଲ ଓ ପୁତ୍ତାଙ୍କର ଦେଶପ୍ରେମ ଓ ବୀରତ୍ୱରେ ମୁଗ୍ଧ ହୋଇ ଅକବର ସେମାନଙ୍କ ପ୍ରତିମୂର୍ତ୍ତି ଆଗ୍ରା ଦୁର୍ଗର ଦ୍ୱାର ଦେଶରେ ରଖାଇଥିଲେ । ଉଦୟ ସିଂହଙ୍କର ବୀର ଓ ସୁଯୋଗ୍ୟ ପୁତ୍ର ରାଣା ପ୍ରତାପ ସିଂହ ମିବାରର ଗୌରବ ଫେରାଇ ଆଣିବାପାଇଁ ପ୍ରାଣପଣେ ଚେଷ୍ଟା କରିଥିଲେ । ଖ୍ରୀ:୧୫୭୬ରେ ହଲଦିଘାଟ ଯୁଦ୍ଧକ୍ଷେତ୍ରରେ ରାଣା ପ୍ରତାପ ଓ ଅକବରଙ୍କ ସୈନ୍ୟମାନଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ହୋଇଥିଲା । ରାଣା ପ୍ରତାପ ବୀରତ୍ୱ ଓ ସାହସର ସହିତ ଯୁଦ୍ଧ କରି ପରାସ୍ତ ହୋଇଥିଲେ ମଧ୍ୟ ଆତ୍ମ-ସମର୍ପଣ କରି ନ ଥିଲେ । ସେ ଅରଣ୍ୟ ଓ ପର୍ବତ ମଧ୍ୟରେ ନାନା ଦୁଃଖ କଷ୍ଟ ସହି ନିଜର ସୈନ୍ୟମାନଙ୍କୁ ସଙ୍ଗଠିତ କରି ମିବାରର ବହୁ ଅଂଶ ଉଦ୍ଧାର କରିଥିଲେ । କିନ୍ତୁ ତାଙ୍କର ପ୍ରାଣପ୍ରିୟ ଚିତୋରକୁ ଫେରିପାଇ ନ ଥିଲେ । ସେ ଖ୍ରୀ: ୧୫୯୭ ରେ ପ୍ରାଣତ୍ୟାଗ କରିଥିଲେ । ରାଣା ପ୍ରତାପ ସିଂହ ସ୍ୱାଧୀନତା ସଂଗ୍ରାମ, ବୀରତ୍ୱ, ଧୈର୍ଯ୍ୟ ଓ ସ୍ୱଦେଶପ୍ରୀତିର ଯେଉଁ ନିଦର୍ଶନ ଦେଖାଇ ଯାଇଅଛନ୍ତି ତାହା ଭାରତ ଇତିହାସରେ ବିରଳ ।

ଚିତୋର ପତନ ପରେ ରଣଥମ୍ବୋର, କାଲିଞ୍ଜର, ଯଶଲ୍ମିର, ବିକାନୀର ପ୍ରଭୃତିର ରାଜପୁତ ରାଜାମାନେ ଅକବରଙ୍କର ବଶ୍ୟତା ସ୍ୱୀକାର କରି କରଦରାଜା ରୂପେ ରାଜପଣ କଲେ । ଅକବର ମାଳବ, ଗୁଜରାଟ, ସୁରାଟ, ବଙ୍ଗ, କାବୁଲ, କାଶ୍ମୀର, ସିନ୍ଧୁ ଏବଂ ଖ୍ରୀ: ୧୫୯୨ ରେ ଓଡ଼ିଶା ଓ କାନ୍ଦାହାରକୁ ନିଜ ରାଜ୍ୟଭୁକ୍ତ କରିଥିଲେ ।

ଉତ୍ତର ଭାରତ ଜୟ କରିସାରି ଅକବର ଦାକ୍ଷିଣାତ୍ୟ ଜୟ କରିବାକୁ ମନ ବଳାଇଥିଲେ । ଅହମ୍ମଦ ନଗରର ରାଜା ନାବାଳକ ଥିବାରୁ ତାଙ୍କ ପିଉସୀ ଚାନ୍ଦବିବି ରାଜକାର୍ଯ୍ୟ ଚଳାଉଥିଲେ । ଏହି ସୁଯୋଗ ଦେଖି ଅକବର ଅହମ୍ମଦ ନଗର ଆକ୍ରମଣ କଲେ । ଚାନ୍ଦବିବି ଅସୀମ ସାହସର ସହିତ ଯୁଦ୍ଧ କରିଥିଲେ । ଯୁଦ୍ଧରେ ସନ୍ଧି ହେବା ଫଳରେ ଅକବର

ଖ୍ରୀ: ୧୬୦୦ରେ ବେରାର ରାଜ୍ୟ ପାଇଲେ । ତା ପରବର୍ଷେ ସେ ସୁଦୃଢ଼ ଅସିରଗଡ଼ ଦୁର୍ଗ ଅଧିକାର କରି ଖାନ୍ଦେଶକୁ ନିଜ ରାଜ୍ୟଭୁକ୍ତ କରିଥିଲେ ।

**ଶେଷ ଜୀବନ** :—ତାଙ୍କର ଶେଷ ଜୀବନ ସୁଖରେ କଟି ନ ଥିଲା । ଅତିରିକ୍ତ ମଦ୍ୟପାନ ହେତୁ ତାଙ୍କର ଦୁଇପୁତ୍ର ମୁରାଦ୍ ଓ ଦାନିୟେଲ୍‌ଙ୍କର ମୃତ୍ୟୁ ଘଟିଥିଲା । ସେଲିମ୍ ମଧ୍ୟ ପିତାଙ୍କର ଅନୁରକ୍ତ ନ ଥିଲେ ଓ ବିଦ୍ରୋହ କରିଥିଲେ । ଅକବରଙ୍କର ଅନ୍ତରଙ୍ଗ ବନ୍ଧୁ ଐତିହାସିକ ଅବୁଲଫାଜଲ୍‌ଙ୍କୁ ସେ ହତ୍ୟା କରାଇଥିଲେ ମଧ୍ୟ ପୁତ୍ରବତ୍ସଳ ଅକବର ତାଙ୍କୁ କ୍ଷମା ଦେଇ ଉତ୍ତରାଧିକାରୀ ମନୋନୀତ କଲେ । ଅକବର ଖ୍ରୀ: ୧୬୦୫ରେ ମନ ଦୁଃଖରେ ପ୍ରାଣତ୍ୟାଗ କରିଥିଲେ ।

**ଚରିତ୍ର** :—ଅକବର ବଡ଼ ଉଦାରମନା, ନ୍ୟାୟପରାୟଣ ଓ ବିବେକୀ ଥିଲେ । ସେ ଲେଖାପଢ଼ା ଜାଣି ନ ଥିଲେ ମଧ୍ୟ ଅନୁଭୂତି ଦ୍ୱାରା ବହୁତ ଜ୍ଞାନ ଅର୍ଜନ କରିଥିଲେ ଓ ଗୁଣୀମାନଙ୍କୁ ଆଦର କରୁଥିଲେ ।



**ରାଜସଭା** :—ତାଙ୍କ ରାଜସଭାରେ ଐତିହାସିକ ଅବୁଲଫାଜଲ, କବି ଫାୟାଜ, ସଙ୍ଗୀତଜ୍ଞ ତାନ୍‌ସେନ୍, ବିଦୂଷକ ବୀରବଲ, ଅର୍ଥନୀତିଜ୍ଞ ତୋଡରମଲ୍ଲ ଓ ସେନାପତି ମାନସିଂହ ପ୍ରଭୃତି ଗୁଣୀ ଲୋକମାନେ ଥିଲେ । ଅବୁଲଫାଜଲ **ଆଇନ ଆକବରୀ** ନାମରେ ଅକବରଙ୍କ ରାଜତ୍ୱର ଗୋଟିଏ ଇତିହାସ ଲେଖିଥିଲେ । ଅକବର ଚିତ୍ରକର ଓ ଶିଳ୍ପୀମାନଙ୍କୁ ଆଦର କରୁଥିଲେ ଓ ସେମାନଙ୍କ ସାହାଯ୍ୟରେ ଫତେପୁର ସିକ୍ରୀର ପ୍ରାସାଦମାନ ନିର୍ମାଣ କରାଇଥିଲେ ।

**ଧର୍ମ ନୀତି** :—ସେ ହିନ୍ଦୁମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ସମୟେ ସମୟେ ହିନ୍ଦୁ ପୋଷାକ ପିନ୍ଧୁଥିଲେ । ସେମାନଙ୍କ ଉପରୁ 'ଜିଜିୟା' କର ଓ 'ଯାତ୍ରୀ' କର ଉଠାଇ ଦେଇଥିଲେ । ହିନ୍ଦୁମାନେ ନିଜ ଇଚ୍ଛାମତେ ପୂଜା, ଉପାସନା ଓ ମନ୍ଦିର ନିର୍ମାଣ କରି ପାରୁଥିଲେ । ସେ ହିନ୍ଦୁମାନଙ୍କ ଉପକାର ପାଇଁ ବାଲ୍ୟବିବାହ ପ୍ରଥା ବନ୍ଦ କରିଥିଲେ ଓ ବିଧବା ବିବାହ ଚଳାଇଥିଲେ । ସେ ହିନ୍ଦୁ ପଣ୍ଡିତମାନଙ୍କ ସଙ୍ଗେ ହିନ୍ଦୁଧର୍ମ ଚର୍ଚ୍ଚା କରୁଥିଲେ ଓ ଅନେକ ହିନ୍ଦୁ ଧର୍ମଶାସ୍ତ୍ରକୁ ଉର୍ଦ୍ଦୁ ଓ ପାର୍ସି ଭାଷାରେ ଅନୁବାଦ କରାଇଥିଲେ । ସେ ଜୈନ, ଖ୍ରୀଷ୍ଟିୟାନ ଓ ଶିଖ ଧର୍ମ ସମ୍ବନ୍ଧରେ ଆଲୋଚନା କରି ସବୁ ଧର୍ମର ସାରତତ୍ତ୍ୱ-ନେଇ **ଦିନଇଲାହୀ** ନାମରେ ଗୋଟିଏ ନୂତନ ଧର୍ମ ପ୍ରଚାର କରିଥିଲେ । ତାଙ୍କ ସମୟରେ ଅଳ୍ପ ଲୋକ ଏହି ଧର୍ମଗ୍ରହଣ କରିଥିଲେ ଓ ତାଙ୍କ ପରେ ସେ ଧର୍ମ ଲୋପ ପାଇଲା ।

**ଶାସନ**:—ଅକବର ଶାସନକ୍ଷେତ୍ରରେ ଯୋଗ୍ୟ ହିନ୍ଦୁମାନଙ୍କୁ ସ୍ଥାନ ଦେଇ ଓ ହିନ୍ଦୁମାନଙ୍କ ପ୍ରତି ଉଦାର ଭାବ ଦେଖାଇ ସେମାନଙ୍କର ସହଯୋଗ ପାଇଥିଲେ । ତାଙ୍କର ଶାସନ ନୀତି ଉଦାର ଓ ଲୋକପ୍ରିୟ ଥିଲା । ସେ ଶେରଶାହଙ୍କ ଶାସନ ପ୍ରଣାଳୀ ଅନୁସରଣ କରି ନିଜ ରାଜ୍ୟକୁ ପନ୍ଦରଟି ସୁବାରେ ବିଭକ୍ତ କରିଥିଲେ । ପ୍ରତ୍ୟେକ ସୁବା ସରକାର ଓ ପ୍ରତ୍ୟେକ

ସରକାର ପ୍ରଗଣାରେ ବିଭକ୍ତ ହୋଇଥିଲା । ପ୍ରତି ପ୍ରଗଣା ଅଧୀନରେ କେତେ-ଗୁଡ଼ିଏ ଗ୍ରାମ ଥିଲା । ପ୍ରତ୍ୟେକ ସୁବାରେ ସୁବାଦାର ନିଯୁକ୍ତ କରି ରାଜସ୍ୱ ଆଦାୟ କରିବାପାଇଁ ତାଙ୍କ ଅଧୀନରେ ଜଣେ ଲେଖାଏଁ ଦେବାନ ନିଯୁକ୍ତ କରିଥିଲେ । କତ୍ୱାଲମାନେ ପୋଲିସ କାର୍ଯ୍ୟ ଓ କାଜିମାନେ ବିଚାରକାର୍ଯ୍ୟ ଚଳାଉଥିଲେ । ପଞ୍ଚାୟତମାନେ ଗ୍ରାମର ମକଦ୍ଦମା ବୁଝୁଥିଲେ । ସେ ସୈନ୍ୟବିଭାଗର ଉନ୍ନତି ପାଇଁ 'ମାନ ସୁବାଦାରୀ' ପ୍ରଥା ଚଳାଇଥିଲେ । କେତେଗୁଡ଼ିଏ ଯୁଦ୍ଧଜାହାଜ ରଖିଥିଲେ; କର୍ମଚାରୀମାନଙ୍କୁ ଜାଗିର ବଦଳରେ ଦରମା ଦେଉଥିଲେ ।

ତୋଡରମଲ୍ଲଙ୍କ ସାହାଯ୍ୟରେ ଜମିସବୁ ମାପକରି ଉର୍ବରତା ଅନୁସାରେ ସେଗୁଡ଼ିକୁ ତିନି ଭାଗରେ ବିଭକ୍ତ କରି କରଧାର୍ଯ୍ୟ କରିଥିଲେ । ଶସ୍ୟର ତିନିଭାଗରୁ ଭାଗେ କର ଆଦାୟ କରାଯାଉଥିଲା । ପ୍ରଜାମାନେ ନଗଦ ଟଙ୍କା ବା ଶସ୍ୟ ଆକାରରେ କର ଦେଉଥିଲେ । ତାଙ୍କ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ଯୋଗୁଁ ପ୍ରଜାମାନେ ସୁଖଶାନ୍ତିରେ କାଳ କାଟୁଥିଲେ । ସେଥିପାଇଁ ସେ ପୃଥିବୀର ଜଣେ ପ୍ରସିଦ୍ଧ ଶାସକ ବୋଲି ବିବେଚିତ ହୁଅନ୍ତି ।

## ଜାହାଙ୍ଗୀର (ଖ୍ରୀ: ୧୬୦୫—ଖ୍ରୀ: ୧୬୨୭)

ଅକବରଙ୍କ ପରେ ତାଙ୍କର ପୁତ୍ର ସେଲିମ୍ 'ଜାହାଙ୍ଗୀର' ବା 'ଜଗତ୍‌ଜେତା' ଉପାଧି ଧାରଣ କରି ସମ୍ରାଟ୍ ହୋଇଥିଲେ ।

**ଖୁସ୍ରୁଙ୍କର ବିଦ୍ରୋହ** :—ଜାହାଙ୍ଗୀରଙ୍କର ପୁତ୍ର ଖୁସ୍ରୁ ସିଂହାସନ ପାଇବା ପାଇଁ ବିଦ୍ରୋହକରି ପଞ୍ଜାବ ପଳାଇଯାଇ ଲାହୋର ଅଧିକାର କଲେ ।



ଜାହାଙ୍ଗୀର ଖୁସ୍ରୁଙ୍କର ବିଦ୍ରୋହ ଦମନ କରାଇଲେ । ଏହି ବିଦ୍ରୋହରେ ଖୁସ୍ରୁଙ୍କୁ ସାହାଯ୍ୟ ଦେଇଥିବାରୁ ଶିଖଙ୍କର **ପଞ୍ଚମ ଗୁରୁ** ଅର୍ଜୁନ ସିଂହଙ୍କୁ ଜାହାଙ୍ଗୀର ପ୍ରାଣଦଣ୍ଡ ଦେଇଥିଲେ । ଖୁସ୍ରୁଙ୍କ ଭାଇ ଖୁର୍ରମ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଥିଲେ । ସେ ଖୁସ୍ରୁଙ୍କୁ ଦାକ୍ଷିଣାତ୍ୟକୁ ନେଇ କୌଶଳରେ ହତ୍ୟା କଲେ ।

**ନୁରଜାହାନ** :—ପ୍ରଥମରେ ତାଙ୍କର ନାମ ମେହେରୁନ୍ନିସା ଥିଲା । ସେ ଭାରି ସୁନ୍ଦରୀ ଥିଲେ । ପାରସ୍ୟରୁ ପଳାଇ-ଆସିଥିବା ଜଣେ ଭଦ୍ରବଂଶଜଙ୍କର ସେ କନ୍ୟା । ସେ ପଳାଇ ଆସି ଅକବରଙ୍କ ପାଖରେ ଚାକିରି କରୁଥିବା-ବେଳେ ଜାହାଙ୍ଗୀର ତାଙ୍କ କନ୍ୟା **ପ୍ରତି ଆକୃଷ୍ଟ** ହେଲେ । ଅକବର ତାହା ଜାଣି ବର୍ଦ୍ଧମାନର ଜାଗିରଦାର ଶେର୍ ଅଫଗାନ୍‌ଙ୍କ ସହିତ ସେହି କନ୍ୟାକୁ ବିବାହ ଦେଇଥିଲେ । ଜାହାଙ୍ଗୀର ସମ୍ରାଟ୍ ହେବାପରେ ଶେର୍ ଅଫଗାନ୍ ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଥିବାର ଅନୁମାନକରି ସେ ଶେର୍ ଅଫଗାନ୍‌ଙ୍କୁ ଧରିବାପାଇଁ ବଙ୍ଗର ନବାବଙ୍କୁ ଆଦେଶ ଦେଲେ । ଧରାହେବାବେଳେ ଶେର୍ ଅଫଗାନ୍ ନିହତ ହେଲେ । ମେହେରୁନ୍ନିସା ଦିଲ୍ଲୀକୁ ଅଣାହେଲେ ଓ ଚାରିବର୍ଷ ପରେ ଖ୍ରୀ: ୧୬୧୧ ରେ ଜାହାଙ୍ଗୀରଙ୍କୁ ବିବାହ କଲେ । ସେହିଦିନଠାରୁ ସେ 'ନୁରଜାହାନ୍' ବା 'ଜଗତ୍‌ଜ୍ୟୋତି' ଉପାଧି ଧାରଣ କଲେ ।



ନୁରଜାହାନ ଯେପରି ସୁନ୍ଦରୀ ସେପରି ବୁଦ୍ଧିମତୀ ଥିଲେ । ସେ ଜାହାଙ୍ଗୀରଙ୍କୁ ବଶୀଭୂତ କରି ରାଜକାର୍ଯ୍ୟ ଚଳାଉଥିଲେ; ତାଙ୍କର ପିତା ମିର୍ଜା ଘିଆସ୍‌ଙ୍କୁ ପ୍ରଧାନମନ୍ତ୍ରୀ, ଭାଇ ଆସଫ୍ ଖାଁଙ୍କୁ ପ୍ରଧାନ ସେନାପତି କରିଥିଲେ ଓ ବନ୍ଧୁମାନଙ୍କୁ ବଡ଼ ବଡ଼ ଚାକିରି ଦେଇଥିଲେ । ସେ ସରକାରୀ କାଗଜପତ୍ରରେ ଜାହାଙ୍ଗୀରଙ୍କ ସହିତ ଦସ୍ତଖତ କରୁଥିଲେ । ମୁଦ୍ରାରେ ମଧ୍ୟ ତାଙ୍କ ନାମ ସ୍ଥାନ ପାଉଥିଲା । ଜାହାଙ୍ଗୀରଙ୍କୁ ବିବାହହେବା ପୂର୍ବରୁ ତାଙ୍କର ଝିଅଟିଏ ଥିଲା । ଏହି ଝିଅକୁ ଜାହାଙ୍ଗୀରଙ୍କର ସାନପୁଅ ସାହାରିୟରଙ୍କୁ ବିବାହ ଦେଇଥିଲେ ଓ ଜାହାଙ୍ଗୀରଙ୍କ ପରେ ଜାମାତାଙ୍କୁ ଦିଲ୍ଲୀ ସମ୍ରାଟ୍ କରାଇବାପାଇଁ ସେ ଆଶା କରିଥିଲେ । ଜାହାଙ୍ଗୀର ମଦ୍ୟପାନ କରି ବିଳାସରେ ସମୟ କାଟିବାରୁ ସେ ରାଜ୍ୟରେ ସର୍ବେସର୍ବା ହେଲେ ।

**ଯୁଦ୍ଧ ଓ ରାଜ୍ୟବିସ୍ତାର** :—ରାଣା ପ୍ରତାପଙ୍କ ପରେ ତାଙ୍କ ପୁଅ ଅମର ସିଂହ ବୀର ନ ଥିବାରୁ ଖୁରାମ ମିବାର ଆକ୍ରମଣ କଲେ । ଅମର ସିଂହ ପରାସ୍ତହୋଇ ସମ୍ରାଟଙ୍କର ବଶ୍ୟତା ସ୍ୱୀକାର କଲେ । ଖୁରାମ ଦାକ୍ଷିଣାତ୍ୟର ଅହମ୍ମଦନଗର ଦୁର୍ଗ ଦଖଲ କରିଥିଲେ । ଜାହାଙ୍ଗୀର ଖୁରାମଙ୍କ ଦକ୍ଷତାରେ ସନ୍ତୁଷ୍ଟ ହୋଇ ତାଙ୍କୁ 'ସାହାଜାହାନ' ଉପାଧି ଦେଇଥିଲେ ।

**ଖୁରାମଙ୍କ ବିଦ୍ରୋହ** :—ଖୁରାମ ଦାକ୍ଷିଣାତ୍ୟରେ ଶାସନକର୍ତ୍ତା ଥିବାବେଳେ ପାରସ୍ୟର ରାଜା କାନ୍ଦାହାର ଆକ୍ରମଣ କଲେ । ନୁରଜାହାନଙ୍କ

ଟନ୍ତରେ ଜାହାଙ୍ଗୀର ଖୁର୍‌ମଙ୍କୁ କାନ୍ଦାହାର ରକ୍ଷାକରିବାପାଇଁ ଆଦେଶ ଦେଲେ । ଖୁର୍‌ମ ଆଦେଶ ନ ମାନି ବିଦ୍ରୋହ କଲେ । କାନ୍ଦାହାର ପାରସ୍ୟ ରାଜ୍ୟଭୁକ୍ତ ହେଲା । ଜାହାଙ୍ଗୀରଙ୍କ ସେନାପତି ମହବତ୍ ଖାଁ ଖୁର୍‌ମଙ୍କୁ ପରାସ୍ତ କରିଥିଲେ । ଜାହାଙ୍ଗୀର ପୁଅକୁ କ୍ଷମା ଦେଇଥିଲେ ।

**ମହବତ୍ ଖାଁଙ୍କ ବିଦ୍ରୋହ** :—ମହବତ୍ ଖାଁଙ୍କର କ୍ଷମତା ଓ ବୀରତ୍ୱରେ ନୁରଜାହାନ ଈର୍ଷାନ୍ୱିତ ହୋଇ ତାଙ୍କ ବିରୁଦ୍ଧରେ ସମ୍ରାଟଙ୍କ ନିକଟରେ ମିଥ୍ୟା ଅଭିଯୋଗମାନ କରିଥିଲେ । ତେଣୁ ମହବତ୍ ଖାଁ ବିଦ୍ରୋହୀ ହେଲେ । ସେ ଜାହାଙ୍ଗୀର ଓ ନୁରଜାହାନଙ୍କୁ ପଞ୍ଜାବରେ ବନ୍ଦୀ କରିଥିଲେ । ନୁରଜାହାନ କୌଶଳକରି ସ୍ୱାମୀଙ୍କୁ ଓ ନିଜକୁ ଖଲାସ କରିଥିଲେ । ମହବତ୍ ଖାଁ ଦାକ୍ଷିଣାତ୍ୟକୁ ପଳାଇ ଆସି ଖୁର୍‌ମଙ୍କ ସଙ୍ଗେ ଯୋଗଦେଲେ । ତାର ଦୁଇବର୍ଷପରେ ଖ୍ରୀ: ୧୬୨୭ରେ ଜାହାଙ୍ଗୀରଙ୍କର ମୃତ୍ୟୁ ହେଲା । ନିଜ ଶ୍ୱଶୁର ଆସଫ୍ ଖାଁଙ୍କ ସାହାଯ୍ୟରେ ଖୁର୍‌ମ ସାହାରିୟାରଙ୍କୁ ଯୁଦ୍ଧରେ ହତ୍ୟା କରିଥିଲେ । ତାହାପରେ ସେ ସାହାଜାହାନ ନାମ ଧାରଣ କରି ସିଂହାସନରେ ବସିଥିଲେ । ସେ ନୁରଜାହାନଙ୍କ ପ୍ରତି ସଦ୍‌ବ୍ୟବହାର ଦେଖାଇଥିଲେ ମଧ୍ୟ ନୁରଜାହାନ ସନ୍ୟାସିନୀ ବେଶରେ ଜାହାଙ୍ଗୀରଙ୍କର କବର ପାଖରେ ଶେଷଜୀବନ କଟାଇଥିଲେ ।

**ଜାହାଙ୍ଗୀରଙ୍କର ଚରିତ୍ର** :—ଜାହାଙ୍ଗୀର ମଦ୍ୟପ ଓ ବିଳାସୀ ଥିଲେ । ବେଳେ ବେଳେ ନିଷ୍ଠୁର ଭାବରେ ପ୍ରତିଶୋଧ ନେଉଥିଲେ । ସେ ହିନ୍ଦୁମାନଙ୍କ ପ୍ରତି ସଦୟ ଥିଲେ ଓ ନିରପେକ୍ଷ ବିଚାର କରୁଥିଲେ । ସାହିତ୍ୟ, ସଙ୍ଗୀତ ଓ ଶିଳ୍ପବିଦ୍ୟାକୁ ସେ ଆଦର କରୁଥିଲେ । ସେ ନିଜେ ଭଲ କବି ଓ ଲେଖକ ଥିଲେ ।

**ହକିନସ୍ ଓ ସାର୍ ଟୋମାସ୍‌ରୋ** :—ଇଂଲଣ୍ଡର ରାଜା ପ୍ରଥମ ଜେମ୍‌ସ୍ ଖ୍ରୀ: ୧୬୦୮ରେ ହକିନସ୍‌ଙ୍କୁ ଇଷ୍ଟଇଣ୍ଡିଆ କମ୍ପାନୀପାଇଁ କେତେକ

ସୁବିଧା ହାସଲ କରିବା ଲାଗି ଜାହାଙ୍ଗୀରଙ୍କ ସକାଶକୁ ପଠାଇଥିଲେ । ସେ ଅକୃତକାର୍ଯ୍ୟ ହୋଇ ଫେରିଯିବାରୁ ଖ୍ରୀ: ୧୬୧୫ ରେ ସାର୍ ଟୋମସ୍ ରୋ ଭାରତକୁ ଆସିଥିଲେ । ସେ ଜାହାଙ୍ଗୀରଙ୍କ ସକାଶରେ ଗୁଡ଼ିଏ ବର୍ଷ ରହି ତାଙ୍କର ପ୍ରିୟପାତ୍ର ହୋଇଥିଲେ ଓ କମ୍ପାନୀ ଲାଗି ସୁରାଟଠାରେ ବାଣିଜ୍ୟକୋଠି ନିର୍ମାଣପାଇଁ ଅନୁମତି ପାଇଥିଲେ । ସେ ଭାରତ ବିଷୟରେ ଗୋଟିଏ ବିବରଣୀ ଲେଖି ଯାଇଅଛନ୍ତି । ସେଥିରୁ ଜଣାପଡ଼େ ଏ ଦେଶରେ ବହୁତ ଶିଳ୍ପୀ ଥିଲେ । ଜାହାଙ୍ଗୀର ବିଳାସରେ ସମୟ କଟାଉଥିବାରୁ ଶାସନ ଭଲ ଚାଲୁ ନଥିଲା । ସାଧାରଣ ଲୋକେ ସୁଖରେ ନ ଥିଲେ ।

## ସାହାଜାହାନ ( ଖ୍ରୀ: ୧୬୨୭—ଖ୍ରୀ: ୧୬୫୮ )

ପିତାଙ୍କ ମୃତ୍ୟୁବେଳକୁ ସାହାଜାହାନ ଦାକ୍ଷିଣାତ୍ୟରେ ଥିଲେ । ସେ ଅସଫ୍ ଖାଁ ଓ ମହାବତ୍ ଖାଁଙ୍କ ସାହାଯ୍ୟରେ ଦିଲ୍ଲୀସିଂହାସନ ଅଧିକାର କରି ରାଜବଂଶର ପୁରୁଷମାନଙ୍କୁ ହତ୍ୟାକଲେ ।



**ଯୁଦ୍ଧ ଓ ରାଜ୍ୟଜୟ** :—ସାହାଜାହାନ ସମ୍ରାଟ୍ ହେବାର ଅଳ୍ପଦିନପରେ ବୁନ୍ଦେଲଖଣ୍ଡର ଶାସନକର୍ତ୍ତା ବିଦ୍ରୋହ କରିଥିଲେ । ସାହାଜାହାନଙ୍କ ପୁତ୍ର ଆଉରଙ୍ଗଜେବ ସେ ବିଦ୍ରୋହ ଦମନ କରିଥିଲେ । ଜାହାଙ୍ଗୀରଙ୍କ ସମୟରେ ଅହମ୍ମଦନଗର ସ୍ୱାଧୀନ ହୋଇଥିଲା । ସାହାଜାହାନ ଖ୍ରୀ: ୧୬୩୩ରେ ଅହମ୍ମଦନଗରକୁ ନିଜ ରାଜ୍ୟରେ ମିଶାଇଲେ । ବିଜାପୁର ଓ ଗୋଲକୁଣ୍ଡାର ସୁଲତାନମାନେ ବାଦ୍‌ସାଙ୍କ-

ପରିଶ୍ରାନ୍ତହୋଇ ସାହାଜାହାନଙ୍କ ସଙ୍ଗେ ସନ୍ଧି କଲେ ଓ ବାର୍ଷିକ କର ଦେବାକୁ ବାଧ୍ୟ ହୋଇଥିଲେ । ସେ ଅରଙ୍ଗଜେବଙ୍କୁ ଦାକ୍ଷିଣାତ୍ୟର ଶାସନକର୍ତ୍ତା ନିଯୁକ୍ତ କରିଥିଲେ । ସାହାଜାହାନ ବହୁ ଅର୍ଥ ବ୍ୟୟକରି କାନ୍ଦାହାର, ବଲ୍ଖ୍, ବାଦକ୍ସାନ୍ ଜୟକରି ଅଳ୍ପଦିନପରେ ସେଗୁଡ଼ିକୁ ହରାଇଲେ ।

**ଇଉରୋପୀୟମାନଙ୍କ ସହିତ ସମ୍ବନ୍ଧ** :—ପର୍ତ୍ତୁଗୀଜ୍‌ମାନେ ହୁଗୁଳିରେ ବାଣିଜ୍ୟ କରିବା ସଙ୍ଗେ ସଙ୍ଗେ ଭାରତର ହିନ୍ଦୁ ଓ ମୁସଲମାନମାନଙ୍କୁ ଖ୍ରୀଷ୍ଟିୟାନ କରୁଥିଲେ । ସେମାନେ ମଧ୍ୟ ଭାରତର ବନ୍ଦରମାନ ଲୁଣ୍ଠନ କରୁଥିଲେ ଓ ଭାରତୀୟମାନଙ୍କୁ ଧରିନେଇ ଦାସରୂପେ ବିକୁଥିଲେ । ଏଥିରେ ବିରକ୍ତ ହୋଇ ସାହାଜାହାନ ପର୍ତ୍ତୁଗୀଜମାନଙ୍କୁ ଆକ୍ରମଣ କରି ପରାସ୍ତ କଲେ ଓ କେତେକ ପର୍ତ୍ତୁଗୀଜଙ୍କୁ ଇସ୍‌ଲାମ୍ ଧର୍ମଗ୍ରହଣ କରିବାକୁ ବାଧ୍ୟ କରିଥିଲେ । ଇଂରେଜ ଡାକ୍ତର ବାଉଟନ୍ ସାହାଜାହାନଙ୍କ କନ୍ୟାକୁ ଆରୋଗ୍ୟ କରିଥିବାରୁ ସେ ଇଂରେଜମାନଙ୍କ ଉପରେ ସନ୍ତୁଷ୍ଟ ହୋଇଥିଲେ ।

**କୀର୍ତ୍ତିକଳାପ** :—ସାହାଜାହାନଙ୍କ ସମୟରେ ରାଜକୋଷରେ ପ୍ରଚୁର ଅର୍ଥ ଥିଲା । ସେ କଳାପ୍ରିୟ ଥିବାରୁ ସୁନ୍ଦର ମସ୍‌ଜିଦ୍, ସମାଧିମନ୍ଦିର, ବିଶାଳ ରାଜପ୍ରାସାଦ, ନଗର ଓ ବହୁମୂଲ୍ୟର ସିଂହାସନମାନ ନିର୍ମାଣ କରିଥିଲେ ।

**ତାଜମହଲ** :—ସାହାଜାହାନଙ୍କର ପ୍ରିୟତମା ରାଣୀ ମମତାଜ ଭାରି ସୁନ୍ଦରୀ ଓ ଗୁଣବତୀ ଥିଲେ । ସେ ତାଙ୍କୁ ଅତ୍ୟଧିକ ଭଲ ପାଉଥିଲେ । ବିବାହର ମାତ୍ର ଚଉଦବର୍ଷ ପରେ ଖ୍ରୀ: ୧୬୩୧ ରେ ମମତାଜ ପ୍ରାଣତ୍ୟାଗ କଲେ । ସାହାଜାହାନଙ୍କ ମନରେ ଦାରୁଣ



ଅଧୀର ହଗିଲ । ତାଙ୍କ ପାଇଁ ଗୋଟିଏ ଅପୂର୍ବ ସମାଧି ନିର୍ମାଣ କରିବାକୁ ସେ ମୃତ୍ୟୁ ପୂର୍ବରୁ ସ୍ୱାମୀଙ୍କୁ ଅନୁରୋଧ କରିଥିଲେ । ଯମୁନାନଦୀ କୂଳରେ ଆଗ୍ରା-ସହରରେ ଶାହାଜାହାନ ମମତାଜଙ୍କର ସ୍ମୃତିରକ୍ଷାକୁ ସୁନ୍ଦର ସମାଧି ମନ୍ଦିରଟିଏ ତୋଳାଇଥିଲେ । ସେହି ଜଗଦ୍‌ବିଖ୍ୟାତ ସମାଧି ମନ୍ଦିର ତାଜମହଲ୍ ଆଜିଯାଏ ଅଛି । ଏହା ଶ୍ୱେତ ମର୍ମର ପ୍ରସ୍ତରରେ ନିର୍ମିତ ଓ ଏଥିରେ ବହୁମୂଲ୍ୟ ରତ୍ନ ଖଚିତ ହୋଇଥିଲା । ତାଜମହଲ୍ ନିର୍ମାଣରେ ଛବିଶ କୋଟି ଟଙ୍କା ଖର୍ଚ୍ଚ ହୋଇଥିଲା ଓ କୋଡ଼ିଏ ହଜାର ଶିଳ୍ପୀ ବାଇଶ ବର୍ଷ ପରିଶ୍ରମ କରିଥିଲେ ।



**ମୟୂରସିଂହାସନ** :—ଶାହାଜାହାନ ସାତ କୋଟି ଟଙ୍କା ଖର୍ଚ୍ଚକରି ମୟୂରସିଂହାସନ ନିର୍ମାଣ କରିଥିଲେ । ତହିଁରେ ଥିବା *ମୟୂର

ଅଣରେ ପ୍ରସିଦ୍ଧ କୋହିନୂର ହୀରା ଥିଲା । ନାଦିରସାହ ଭାରତ ଆକ୍ରମଣ କଲାବେଳେ ଏହିି ସିଂହାସନଟି ପାରସ୍ୟକୁ ନେଇଯାଇଥିଲେ ।

ଏହା ବ୍ୟତୀତ ସେ ଆଗ୍ରାରେ ମୋତିମସ୍‌ଜିଦ୍, ଦିଲ୍ଲୀରେ ଜୁମାମସ୍‌ଜିଦ୍, ଦେଓ୍ୟାନିଆମ୍, ଦେଓ୍ୟାନିଖାସ୍ ନିର୍ମାଣ କରିଥିଲେ ଓ ନିଜ ନାମରେ ସାହାଜାହାନାବାଦ ସହର ବସାଇଥିଲେ ।

**ଚରିତ୍ର** :—ସେ ସାହିତ୍ୟିକ, ଶିଳ୍ପୀ ଓ କଳାବିତ୍‌ମାନଙ୍କୁ ଆଦର କରୁଥିଲେ । ସେ ନ୍ୟାୟଭାବରେ ଶାସନ ଚଳାଉଥିଲେ ମଧ୍ୟ ହିନ୍ଦୁମାନଙ୍କ-ପ୍ରତି ଉଦାର ନଥିଲେ ।

**ପୁତ୍ରମାନଙ୍କ ମଧ୍ୟରେ ବିବାଦ** :—ଦାରା, ସୁଜା, ଅଉରଙ୍ଗଜେବ ଓ ମୁରାଦ ନାମରେ ତାଙ୍କର ଚାରୋଟି ପୁଅ ଥିଲେ । ସାହାଜାହାନ୍ ବଡ଼ପୁଅ ଦାରାଙ୍କୁ ବେଶୀ ଭଲ ପାଉଥିଲେ ବୋଲି ତାଙ୍କୁ ନିଜ ପାଖରେ ରଖିଥିଲେ । ସୁଜା ବଙ୍ଗଳାର, ଅଉରଙ୍ଗଜେବ ଦାକ୍ଷିଣାତ୍ୟର ଓ ମୁରାଦ ଗୁଜରାଟର ଶାସନକର୍ତ୍ତା ଥିଲେ । ଚାରିପୁଅଙ୍କ ମଧ୍ୟରେ ଅଉରଙ୍ଗଜେବ ସବୁଠାରୁ ବୁଦ୍ଧିମାନ୍ ଓ ଚତୁର । ଖ୍ରୀ: ୧୬୫୭ରେ ସାହାଜାହାନ ପୀଡ଼ିତ ହେବାରୁ ତାଙ୍କର ମୃତ୍ୟୁ ଆଶଙ୍କାକରି ପୁଅମାନେ ସିଂହାସନ ପାଇବାପାଇଁ ଚେଷ୍ଟାକଲେ । ଅଉରଙ୍ଗଜେବ ମୁରାଦଙ୍କୁ ଅଧେ ରାଜ୍ୟ ଦେବେ ବୋଲି କହି ତାଙ୍କ ସଙ୍ଗେ ମେଣ୍ଟବାନ୍ଧି ସାହାଜାହାନଙ୍କ ସୈନ୍ୟ ଓ ଦାରାଙ୍କୁ ପରାସ୍ତ କଲେ । ଦାରା ଅଫଗାନିସ୍ଥାନ ଆଡ଼େ ପଳାଇ ଯାଉଁଯାଉଁ ଧରାପଡ଼ି ନିହତ ହେଲେ । ସୁଜା ମଧ୍ୟ ପରାସ୍ତହୋଇ ନିହତ ହେଲେ । ଅଉରଙ୍ଗଜେବ ସାହାଜାହାନ ଓ ମୁରାଦଙ୍କୁ ବନ୍ଦୀକରି ସିଂହାସନରେ ବସିଲେ । ପରେ ମୁରାଦ ନିହତ ହେଲେ । ସାହାଜାହାନ ବନ୍ଦୀ ଅବସ୍ଥାରେ ଆଠବର୍ଷ ବନ୍ଦୀତ୍ୱ ସହି ଖ୍ରୀ:୧୬୬୬ ରେ ପ୍ରାଣତ୍ୟାଗ କଲେ ।

# ପଞ୍ଚଦଶ ଅଧ୍ୟାୟ

## ଓଡ଼ିଶାର ସୂର୍ଯ୍ୟବଂଶ

**କପିଳେନ୍ଦ୍ର ଦେବ** :—(ଖ୍ରୀ: ୧୪୩୬—ଖ୍ରୀ: ୧୪୬୬):—ଗଙ୍ଗା ବଂଶର ଶେଷ ରାଜାଙ୍କର ପୁଅ ନଥିବାରୁ ସେ ଚିନ୍ତିତ ଥିଲେ । କଥିତ ଅଛି ଦିନେ ସେ ସ୍ୱପ୍ନ ଦେଖିଲେ, 'ଯେ ବିମଳାଙ୍କ ମନ୍ଦିର ନିକଟରେ ତା ପରଦିନ ଭଙ୍ଗାକୁଡ଼ୁଆରୁ ମହାପ୍ରସାଦ ଖାଉଥିବ ସେ ତାଙ୍କର ଉତ୍ତରାଧିକାରୀ ହେବ ।' ତା ପରଦିନ କପିଳ ନାମରେ ଜଣେ ଗଉଡ଼ ପିଲା ସେଠାରେ ମହାପ୍ରସାଦ ଖାଉଥିବାରୁ ଗଙ୍ଗାବଂଶର ଶେଷରାଜା ତାଙ୍କୁ ଉତ୍ତରାଧିକାରୀ ମନୋନୀତ କଲେ । ଏହି କପିଳ ଜଣେ ବ୍ରାହ୍ମଣ ଘରେ ଗୋରୁ ଜଗୁଥିଲେ । ତା ପରେ କପିଳେନ୍ଦ୍ରଦେବ ନାମ ଧାରଣକରି ଓଡ଼ିଶାର ରାଜା ହେଲେ । ସେ ସୂର୍ଯ୍ୟ-ବଂଶୀୟ ଥିବାରୁ ତାଙ୍କ ସମୟରୁ ଓଡ଼ିଶାରେ ସୂର୍ଯ୍ୟବଂଶ ସ୍ଥାପିତ ହେଲା । ତାଙ୍କର ଶାସନକାଳ ଓଡ଼ିଶା ଇତିହାସରେ ଗୋଟିଏ ଗୌରବମୟ ଯୁଗ ।

ସଙ୍କଟମୟ ପରିସ୍ଥିତିରେ କପିଳେନ୍ଦ୍ର ଦେବ ଓଡ଼ିଶାରେ ରାଜା ହୋଇ ନିଜ କ୍ଷମତାର ପରିଚୟ ଦେଇଥିଲେ । ସେ ମାଳବର ସୁଲତାନଙ୍କୁ ପରାସ୍ତ କରିଥିଲେ ଓ ବଙ୍ଗର ଗୌଡ଼ ଅଧିକାର କରିଥିଲେ । ଦକ୍ଷିଣରେ ନଅଟି ସୁଦୃଢ଼ ଦୁର୍ଗ ଅଧିକାର କରିବାପରେ କାଞ୍ଚି ଜୟ କରିଥିଲେ । ସେ କର୍ଣ୍ଣାଟର ରାଜଧାନୀ ବିଜୟନଗର ଅବରୋଧକରି ସେଠାର ରାଜାଙ୍କୁ ପରାସ୍ତ କରିଥିଲେ ଓ ବାହାମନୀ ରାଜ୍ୟ ଆକ୍ରମଣକରି ତାର ରାଜଧାନୀ ବିଦର ଜୟ କରିଥିଲେ । ଏହି ରାଜ୍ୟର ପୂର୍ବ ରାଜଧାନୀ କଲବର୍ଗା ଥିଲା । ଏହିସବୁ ରାଜ୍ୟ ଜୟକରି ସେ "ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳବର୍ଗେଶ୍ୱର ଉପାଧି ଧାରଣ କରିଥିଲେ ।

ସେ ଜଣେ ଗୁଣୀ ପଣ୍ଡିତ ଓ ଉଦାର ରାଜା ଥିଲେ ଓ ତାଙ୍କ ସମୟରେ ସାରଳା ଦାସ ଓଡ଼ିଆ ସାହିତ୍ୟ ଅନୁଯାୟୀରେ 'ମହାଭାରତ' ଲେଖିଥିଲେ। ତାଙ୍କ ସମୟରୁ 'କପିଳାବ୍ଦ' ଚଳୁଥିଲା। ସେ ଦେଶରେ ସୁଶାସନ ଚଳାଉ-ଥିଲେ। ନିଜେ ଶାସନ ବ୍ୟବସ୍ଥା ଦେଖିବାପାଇଁ କୃଷ୍ଣାନଦୀ କୂଳରେ ଭ୍ରମଣ କରୁଥିବାବେଳେ ସେ ଖ୍ରୀ: ୧୪୬୭ ରେ ପ୍ରାଣତ୍ୟାଗ କଲେ।

**ପୁରୁଷୋତ୍ତମ ଦେବ** (ଖ୍ରୀ: ୧୪୬୭—ଖ୍ରୀ: ୧୪୯୭):—ପୁରୁଷୋତ୍ତମଦେବ ପିତାଙ୍କ ସହିତ ଦାକ୍ଷିଣାତ୍ୟ ଜୟ କରିବା ସମୟରେ କାଞ୍ଚି ରାଜକେମାଙ୍କୁ ବିବାହ କରିବାକୁ ଇଚ୍ଛା କରିଥିଲେ। କାଞ୍ଚିରାଜା ପୁରୁଷୋତ୍ତମଙ୍କୁ ତାଙ୍କର କନ୍ୟାକୁ ବିବାହ ଦେବାକୁ ରାଜି ହୋଇଥିଲେ। ପରେ ରଥଯାତ୍ରା ବେଳେ ପୁରୁଷୋତ୍ତମ ଛେରାପହଁରା କରୁଥିବାର ଦେଖି କାଞ୍ଚିରାଜା ତାହା ଚଣ୍ଡାଳ କାର୍ଯ୍ୟ ମନେକରି ନିଜକନ୍ୟାକୁ ତାଙ୍କପରି ଚଣ୍ଡାଳ ସଙ୍ଗରେ ବିବାହ ଦେବାକୁ ମନାକଲେ। କାଞ୍ଚିରାଜା ତାଙ୍କର ଅପହୃତରାଜ୍ୟ ପୁରୁଷୋତ୍ତମଙ୍କ ରାଜ୍ୟରୁ ଛଡ଼ାଇନେବାରୁ ପୁରୁଷୋତ୍ତମ କାଞ୍ଚିକୁ ଯୁଦ୍ଧ-ଯାତ୍ରାକରି ସେଠାର ରାଜାଙ୍କୁ ପରାସ୍ତ କଲେ ଓ କେତେକ ରାଜ୍ୟ ପୁଣି ଛଡ଼ାଇ ଆଣିଲେ। ସେ କାଞ୍ଚି ରାଜଜେମା ପଦ୍ମାବତୀଙ୍କୁ ବଳପୂର୍ବକ ଧରିନେଇ ଆସିଥିଲେ ଓ ତାଙ୍କୁ ଜଣେ ଚଣ୍ଡାଳ ସଙ୍ଗେ ବିବାହ ଦେବାକୁ ସ୍ଥିର କରିଥିଲେ। ସେ ରଥଯାତ୍ରାରେ ଛେରାପହଁରା କଲାବେଳେ ତାଙ୍କର ଚତୁରମନ୍ତ୍ରୀ ତାଙ୍କୁ କହିଲେ, "ଆପଣ ବର୍ତ୍ତମାନ ଚଣ୍ଡାଳ, ପଦ୍ମାବତୀଙ୍କୁ ବିବାହ କରନ୍ତୁ।" ତାହାପରେ ପୁରୁଷୋତ୍ତମ ଦେବ ପଦ୍ମାବତୀଙ୍କୁ ବିବାହ କରିଥିଲେ।

ବାହାମନୀ ଓ ବିଜୟ ନଗରର ରାଜାମାନେ ପ୍ରଥମେ କେତେକ ରାଜ୍ୟ ପୁରୁଷୋତ୍ତମଙ୍କଠାରୁ ଛଡ଼ାଇ ନେଇଥିଲେ। ସେ ପରେ ସେମାନଙ୍କୁ ପରାସ୍ତକରି ଅପହୃତ ରାଜ୍ୟର କେତେକ ଅଂଶ ଦଖଲ କରିଥିଲେ। ପୁରୁଷୋତ୍ତମ ନେଲୋର ରାଜ୍ୟର ଦକ୍ଷିଣରୁ କାବେରୀ ନଦୀ ପର୍ଯ୍ୟନ୍ତ ରାଜ୍ୟ

ହୋଇଥିଲେ । ସେ ଖ୍ରୀ: ୧୪୯୭ରେ ପ୍ରାଣତ୍ୟାଗ କଲେ । ପୁରୁଷୋତ୍ତମ ଦେବ ଜଣେ ଦାନୀ, ସାହିତ୍ୟସେବୀ ଓ ଧାର୍ମିକ ରାଜା ଥିଲେ । ସେ ପଣ୍ଡିତମାନଙ୍କୁ ବହୁତ ଦାନ କରୁଥିଲେ ।

**ପ୍ରତାପରୁଦ୍ର ଦେବ** (ଖ୍ରୀ: ୧୪୯୭—ଖ୍ରୀ: ୧୫୨୯):— ତାଙ୍କ ସମୟରେ ଉତ୍ତର ବଙ୍ଗର ଶାସକ ଆଲ୍ଲାଉଦ୍ଦିନ୍ ହୋସେନ୍ ସାହ ପ୍ରତାପରୁଦ୍ରଙ୍କର ମନ୍ତ୍ରୀ ଓ କର୍ମଚାରୀମାନଙ୍କର ବିଶ୍ୱାସଘାତକତା ଯୋଗୁଁ ଓଡ଼ିଶା ଆକ୍ରମଣ କରିଥିଲେ । ମୁସଲମାନ ସୈନ୍ୟମାନେ ବହୁତ ହିନ୍ଦୁକୀର୍ତ୍ତି ଧ୍ୱଂସକରି ପୁରୀ ପର୍ଯ୍ୟନ୍ତ ଅଗ୍ରସର ହେଲେ । ପ୍ରତାପରୁଦ୍ର ଯୁଦ୍ଧକରି ସେମାନଙ୍କୁ ଗଙ୍ଗାନଦୀର ଅବବାହିକାକୁ ତଡ଼ିଦେଇଥିଲେ । ବିଜୟ ନଗରର ରାଜା କୃଷ୍ଣଦେବ ରାୟ ବହୁବାର ପ୍ରତାପଙ୍କ ସଙ୍ଗେ ଯୁଦ୍ଧ କରିଥିଲେ । ଶେଷରେ ସନ୍ଧି ହେଲା ଓ ପ୍ରତାପରୁଦ୍ର ଦେବ ଗୋଦାବରୀର ଦକ୍ଷିଣରେ ଥିବା ସମୁଦାୟ ରାଜ୍ୟ କୃଷ୍ଣଦେବ ରାୟଙ୍କୁ ଛାଡ଼ିଦେଲେ । ଗୋଲ୍‌କୁଣ୍ଡାର ସୁଲ୍‌ତାନ୍ ମଧ୍ୟ ଗୋଦାବରୀର ଉତ୍ତରରେ ଥିବା କେତେକ ରାଜ୍ୟ ପ୍ରତାପଙ୍କଠାରୁ ଛଡ଼ାଇ ନେଇଥିଲେ ।

ପ୍ରତାପରୁଦ୍ର ପର୍ତ୍ତୁଗୀଜମାନଙ୍କୁ ଓଡ଼ିଶାରେ ବାଣିଜ୍ୟ କରିବାକୁ ଅନୁମତି ଦେଇଥିଲେ । ତାଙ୍କ ସମୟରେ ଜଗନ୍ନାଥ ଦାସ ଓଡ଼ିଆ 'ଭାଗବତ' ଓ ବଳରାମ ଦାସ ଓଡ଼ିଆ 'ରାମାୟଣ' ଲେଖିଥିଲେ । ଚୈତନ୍ୟଦେବ ସେ ସମୟରେ ବଙ୍ଗଳାରୁ ପଳାଇଆସି ଓଡ଼ିଶାରେ ବୈଷ୍ଣବଧର୍ମ ପ୍ରଚାର କରିଥିଲେ । ପ୍ରତାପରୁଦ୍ର ଓ ତାଙ୍କର ପାତ୍ରମନ୍ତ୍ରୀମାନେ ବୈଷ୍ଣବ ଧର୍ମ ଗ୍ରହଣ କରି ଭକ୍ତିର ମଧୁର ରସରେ ମାତିଲେ ଓ ରାଜ୍ୟ ଶାସନ ଭଲରୂପେ ଚଳାଇଲେ ନାହିଁ । ବାହାରର ଶତ୍ରୁମାନଙ୍କର ଆକ୍ରମଣ, ବୈଷ୍ଣବଧର୍ମ ଯୋଗୁଁ ରାଜା ଓ କର୍ମଚାରୀମାନଙ୍କର ରାଜ୍ୟଶାସନରେ ଶିଥିଳତା ଓ କର୍ମଚାରୀମାନଙ୍କର ବିଶ୍ୱାସଘାତକତା ଯୋଗୁଁ ରାଜ୍ୟର ପତନ ହୋଇଥିଲା ।

**ଚୈତନ୍ୟଦେବ** :— ସେ ଖ୍ରୀ: ୧୪୮୫ରେ ନବଦ୍ୱୀପରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିଲାଦିନର ନାମ ନିମାଇଁ । ତାଙ୍କର ବାପାଙ୍କ ନାମ ଜଗନ୍ନାଥ ମିଶ୍ର ଓ ମାଆଙ୍କ ନାମ ଶଚୀଦେବୀ । ତାଙ୍କର ବାପା ବଡ଼ ପଣ୍ଡିତ ଥିଲେ । ସେ ଉତ୍କଳରୁ ଯାଇ ନବଦ୍ୱୀପରେ ଶାସ୍ତ୍ରାଲୋଚନା କରୁ କରୁ ସେଠାରେ ରହିଗଲେ । ନିମାଇଁ ନିଜେ ବଡ଼ ପଣ୍ଡିତ ଥିଲେ । ତାଙ୍କୁ ତେଇଶ ବର୍ଷ ବୟସ ହେଲାବେଳେ ତାଙ୍କର ସ୍ତ୍ରୀ ମରିଯାଇଥିଲେ । ସେ ଗୟାକୁ ଗଲେ । ସେଠାରୁ ଫେରି ବୈଷ୍ଣବଧର୍ମ ଗ୍ରହଣ କରି ବଙ୍ଗଳା ଓ ଓଡ଼ିଶାରେ ହିନ୍ଦୁ ଓ ମୁସଲମାନ୍‌ମାନଙ୍କ ମଧ୍ୟରେ ସେହି ଧର୍ମ ପ୍ରଚାର କଲେ । ଓଡ଼ିଶାର ରାଜା ତାଙ୍କ ଧର୍ମଗ୍ରହଣ କରି ରାଜ୍ୟ ଶାସନରେ ମନ ନଦେବାରୁ ଓଡ଼ିଶାର ପତନ ହେଲା । ଚୈତନ୍ୟ ଖ୍ରୀ: ୧୫୩୩ରେ ପୁରୀରେ ଦେହତ୍ୟାଗ କଲେ । ଜଗନ୍ନାଥ, ବଳରାମ, ଅଚ୍ୟୁତାନନ୍ଦ, ଅନନ୍ତ ଓ ଯଶୋବନ୍ତ ନାମରେ ତାଙ୍କର ପାଞ୍ଚଜଣ ଶିଷ୍ୟ ଥିଲେ । ସେମାନଙ୍କୁ 'ପଞ୍ଚସଖା' ବୋଲାଯାଏ । ସେମାନଙ୍କ ମଧ୍ୟରେ ଓଡ଼ିଆ 'ଭାଗବତ' ରଚୟିତା ଜଗନ୍ନାଥ ଦାସ ପ୍ରଧାନ । ସେ 'ଅତିବଡ଼ୀ' ଉପାଧି ପାଇଥିଲେ । ପଞ୍ଚସଖା ଓଡ଼ିଆ ଭାଷାରେ ଅନେକ ପୁସ୍ତକ ରଚନା କରିଥିଲେ ।

**ଓଡ଼ିଶାରେ ଅରାଜକତା** :—ପ୍ରତାପରୁଦ୍ରଙ୍କର ପୁଅମାନେ ଦୁର୍ବଳ ଥିବାରୁ ପ୍ରଧାନମନ୍ତ୍ରୀ ବିଶ୍ୱାସଘାତକ ଗୋବିନ୍ଦ ବିଦ୍ୟାଧର ଗୋଟିକ ପରେ ଗୋଟିଏ ରାଜାଙ୍କୁ ହତ୍ୟାକଲେ । ସେ ଖ୍ରୀ: ୧୫୪୧ ରେ ଓଡ଼ିଶାର ସିଂହାସନ ଅଧିକାର କରି ଭୋଇବଂଶ ସ୍ଥାପନ କଲେ । ଗୋବିନ୍ଦ ବିଦ୍ୟାଧରଙ୍କ ପରେ ଆଉ କେତେଜଣ ଦୁର୍ବଳ ରଜା ଭୋଇବଂଶରେ ରାଜପଣ କରିଥିଲେ । ଦେଶରେ ଅରାଜକତା, କଳହ ଓ ବିଦ୍ରୋହ ଲାଗି-ରହିଥିଲା । ଗଡ଼ଜାତର ରାଜା ଓ ପାତ୍ରମନ୍ତ୍ରୀମାନେ ବିଦ୍ରୋହ କରୁଥିଲେ । ଶେଷରେ ଭୋଇବଂଶର ପ୍ରଧାନମନ୍ତ୍ରୀ ତେଲେଙ୍ଗା ମୁକୁନ୍ଦ ଦେବ ସମସ୍ତ ବିଦ୍ରୋହ ଦମନ କରି ଓଡ଼ିଶାର ରାଜା ହେଲେ ।

**ମୁକୁନ୍ଦଦେବ** (ଖ୍ରୀ: ୧୫୫୯—ଖ୍ରୀ:୧୫୬୮ ) :—ବିଶ୍ୱାସଘାତ ସେନାପତି ମୁକୁନ୍ଦ ଦେବ ବା ତେଲେଙ୍ଗା ମୁକୁନ୍ଦ ଦେବ ଓଡ଼ିଶା ସିଂହାସନ ଅଧିକାର କରି ତାଙ୍କ ରାଜଧାନୀ କଟକରେ ବାରବାଟୀଦୁର୍ଗ ନୂତନ ପ୍ରକାରରେ ତୋଳାଇଲେ । ସେହି ଦୁର୍ଗର ଦ୍ୱାରଦେଶର ତୋରଣ ମାତ୍ର ଅଦ୍ୟାବଧି ଅଛି । ବଙ୍ଗର ସୁଲତାନ ଗିୟାସୁଦ୍ଦିନ୍ ଓଡ଼ିଶା ଆକ୍ରମଣ କରି ଯାଜପୁର ପର୍ଯ୍ୟନ୍ତ ମାଡ଼ି ଆସିଥିଲେ । ମୁକୁନ୍ଦଦେବ ତାଙ୍କୁ ହୁଗୁଳି ନଦୀ ପର୍ଯ୍ୟନ୍ତ ତଡ଼ିଦେଇ ସେଠାରେ ବିଜୟର ଚିହ୍ନସ୍ୱରୂପ ତ୍ରିବେଣୀ ଘାଟ ନିର୍ମାଣ କରିଥିଲେ । ସେ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ନିଜ ରାଜ୍ୟ ବିସ୍ତାର କରିଥିଲେ ।

ଆକବର ମୁକୁନ୍ଦଦେବଙ୍କ ସହିତ ବନ୍ଧୁତା ସ୍ଥାପନ କରିଥିଲେ । ସେ ତାଙ୍କର ଓ ମୁକୁନ୍ଦ ଦେବଙ୍କର ଶତ୍ରୁ ବଙ୍ଗ ସୁଲତାନଙ୍କର ରାଜ୍ୟ ଆକ୍ରମଣ କରିବାକୁ ମୁକୁନ୍ଦ ଦେବଙ୍କୁ ପ୍ରବର୍ତ୍ତାଇଥିଲେ ।

ଆକବର ଚିତୋର ଆକ୍ରମଣ କରିବାବେଳେ ବଙ୍ଗର ସୁଲତାନ ସୁଲେମାନ୍ କରରାଣୀ ଓଡ଼ିଶା ଆକ୍ରମଣ କଲେ । ସେ ତାଙ୍କର ସୈନ୍ୟ-ମାନଙ୍କୁ ଦୁଇ ଦଳରେ ବିଭକ୍ତ କରିଥିଲେ । ସୁଲେମାନ୍ ଦଳେ ସୈନ୍ୟ ନେଇ ଦକ୍ଷିଣକୁ ଗତି କଲେ । ତାଙ୍କ ପୁଅ ଓ କଳାପାହାଡ଼ ଆଉ ଦଳେ ସୈନ୍ୟ ନେଇ ଗଡ଼ଜାତ ମଧ୍ୟଦେଇ ଆସିଲେ । ସୁଲେମାନ୍ ସହିତ ମୁକୁନ୍ଦ ଦେବଙ୍କର ଭୀଷଣ ଯୁଦ୍ଧ ହେଲା । ଏହି ସମୟରେ ସାରଙ୍ଗଗଡ଼ର ଅଧିପତି ରାମଚନ୍ଦ୍ର ଭଞ୍ଜ ନିଜକୁ ଓଡ଼ିଶାର ରାଜା ବୋଲି ଘୋଷଣା କରିବାରୁ ମୁକୁନ୍ଦ ଦେବ ତାଙ୍କ ସହିତ ଯୁଦ୍ଧ କରିବାକୁ ଆସିଲେ । ଯୁଦ୍ଧରେ ରାମଚନ୍ଦ୍ର ଭଞ୍ଜ ଓ ମୁକୁନ୍ଦ ଦେବ ଉଭୟେ ହତ ହେଲେ । କଳାପାହାଡ଼ ବାରବାଟୀ ଦୁର୍ଗ ଅଧିକାର କଲେ । କଥିତ ଅଛି, ମୁକୁନ୍ଦଦେବଙ୍କ ରାଣୀ ବନ୍ଦିନୀ ହେବା ଭୟରେ କଳାପାହାଡ଼କୁ ବହୁତ ଧନରତ୍ନ ଦେଇ ମୁକ୍ତ ହେଲେ । ଦକ୍ଷିଣ

ଓଡ଼ିଶା ମଧ୍ୟ ଗୋଲକୁଣ୍ଡାର ସୁଲତାନଙ୍କ ଦ୍ୱାରା ଅଧିକୃତ ହେଲା । ଏହାର ଅଳ୍ପଦିନ ପରେ ବଙ୍ଗ ଓ ଓଡ଼ିଶା ଅକବରଙ୍କ ସାମ୍ରାଜ୍ୟଭୁକ୍ତ ହେଲା । ମୁକୁନ୍ଦଦେବ ଓଡ଼ିଶାର ଶେଷ ସ୍ୱାଧୀନ ରାଜା ।

**କଳାପାହାଡ଼** :—ତାଙ୍କର ଅନ୍ୟ ନାମ କାଲିଦାସ ଗଜଦାନି । ସେ ବ୍ରାହ୍ମଣ ଥିଲେ ମଧ୍ୟ ଜଣେ ମୁସଲମାନ୍ ରମଣୀକୁ ବିବାହ କରି ସମାଜଚ୍ୟୁତ ହୋଇଥିଲେ । ପରେ ସେ ହିନ୍ଦୁ ହେବାକୁ ମୁକୁନ୍ଦଦେବ ଓ ମୁକ୍ତିମଣ୍ଡପର ସାହାଯ୍ୟ ଲୋଡ଼ିଥିଲେ । କେହି ତାଙ୍କୁ ସାହାଯ୍ୟ ନଦେବାରୁ ସେ ହିନ୍ଦୁଧର୍ମ ଉପରେ ପ୍ରତିଶୋଧ ନେବାପାଇଁ ଓ ହିନ୍ଦୁକୀର୍ତ୍ତି ଧ୍ୱଂସ କରିବା ପାଇଁ ପ୍ରତିଜ୍ଞା କରିଥିଲେ ।

ସେ ଓଡ଼ିଶା ଜୟକରି ଭୁବନେଶ୍ୱରରେ ଅନେକ ମୂର୍ତ୍ତି ଓ ମନ୍ଦିର ଭାଙ୍ଗି ପୁରୀ ଯାତ୍ରାକଲେ । ଏହା ଜାଣିପାରି ପଣ୍ଡାମାନେ ଜଗନ୍ନାଥଙ୍କୁ ଚିଲିକା କୂଳରେ ଲୁଚାଇଦେଲେ । କଳାପାହାଡ଼ ସେଠାକୁ ଯାଇ ଜଗନ୍ନାଥ ମୂର୍ତ୍ତିଙ୍କୁ ନେଇ ଗଙ୍ଗାକୂଳରେ ପୋଡ଼ାଇଥିଲେ । ମୂର୍ତ୍ତି ପୂର୍ଣ୍ଣମାତ୍ରାରେ ପୋଡ଼ିବା ପୂର୍ବରୁ ବିଶର ମହାନ୍ତି ନାମରେ ଜଣେ ଭକ୍ତ ଠାକୁରଙ୍କର ନାଭିକମଳ ଘେନି ଆସିଲେ । ସେହି ନାଭିକମଳକୁ ରଖି ପୁଣି ମୂର୍ତ୍ତି ଗଢ଼ାହେଲେ । କଳାପାହାଡ଼ ଭୁବନେଶ୍ୱର, ପୁରୀ ଓ କୋଣାର୍କରେ ଶ୍ରେଷ୍ଠ ଶ୍ରେଷ୍ଠ ଦେଉଳ ଭାଙ୍ଗି ପକାଇଥିଲେ ମାତ୍ର ପ୍ରଧାନ ମନ୍ଦିରଗୁଡ଼ିକ ବିଶାଳ ଥିବାରୁ ସେଗୁଡ଼ିକର କ୍ଷତି କରିପାରି ନଥିଲେ ।

---

# ଷୋଡ଼ଶ ଅଧ୍ୟାୟ

## ମରହଟ୍ଟା ଜାତିର ଉତ୍ଥାନ ଓ ଶିବାଜୀ

ସାତପୁରା ପର୍ବତର ଦକ୍ଷିଣରେ ଓ ପଶ୍ଚିମଘାଟର ପୂର୍ବରେ ଅବସ୍ଥିତ ମହାରାଷ୍ଟ୍ର ଦେଶର ଲୋକମାନଙ୍କୁ ମରହଟ୍ଟା କହନ୍ତି । ସେମାନେ କଷ୍ଟସହିଷ୍ଣୁ,

ଅଧ୍ୟବସାୟୀ, ବଳିଷ୍ଠ ଓ ଯୁଦ୍ଧପ୍ରିୟ ଜାତି । ସେମାନେ ସଦାଚାରୀ, ନ୍ୟାୟବାନ୍ ଓ ନୈଷ୍ଠିକ ହିନ୍ଦୁ । ମୁସଲମାନ୍‌ମାନଙ୍କ ଅତ୍ୟାଚାର ଯୋଗୁଁ ସେମାନେ ଦୁର୍ବଳ ହେଲେ ମଧ୍ୟ ହିନ୍ଦୁଧର୍ମକୁ ଜୀବିତ କରିବା ପାଇଁ ଆଶା ରଖିଥିଲେ । ମହାବୀର ଶିବାଜୀ ସେମାନଙ୍କୁ ସଂଗଠିତ କରିଇ ଏକ ବୀରଜାତି ଗଢ଼ିଥିଲେ ।

**ଶିବାଜୀ** :—ସେ ଖ୍ରୀ: ୧୬୨୭ ରେ ମହାରାଷ୍ଟ୍ରର ଜୁନ୍ନାର ନାମକ ଗୋଟିଏ ପାର୍ବତ୍ୟ ଦୁର୍ଗରେ ଜନ୍ମ ହୋଇଥିଲେ । ତାଙ୍କ ପିତା ସାହାଜୀ ବିଜାପୁର ସୁଲ୍‌ତାନ୍‌ଙ୍କର ଜଣେ ଜାଗିରଦାର ଥିଲେ ଓ ତାଙ୍କ ପାଖରେ ଚାକିରି କରୁଥିଲେ । ଶିବାଜୀ ପିଲାଦିନରେ ମାଆଙ୍କ ପାଖେ ଥିଲେ । ମାଆ ତାଙ୍କୁ ହିନ୍ଦୁଧର୍ମ ଓ ଗୋବ୍ରାହ୍ମଣମାନଙ୍କୁ ରକ୍ଷାକରିବାପାଇଁ ଶିକ୍ଷା ଦେଇଥିଲେ । ସେ ରାମାୟଣ ଓ ମହାଭାରତ ପଢ଼ି ରାମାୟଣ ଓ ମହାଭାରତର ବୀରମାନଙ୍କ ପରି ବୀର ହେବାକୁ ଇଚ୍ଛା କରିଥିଲେ । ତାଙ୍କର 'ଗୃହ-ଶିକ୍ଷକ ଦାଦାଜୀ କୋଣ୍ଡଦେବ ତାଙ୍କୁ ଅଶ୍ୱାରୋହଣ ଓ ଯୁଦ୍ଧବିଦ୍ୟା ଶିକ୍ଷା ଦେଇଥିଲେ । ଭାରତରେ ହିନ୍ଦୁରାଜ୍ୟ ସ୍ଥାପନ କରିବା ତାଙ୍କର ଲକ୍ଷ୍ୟ ଥିଲା ।

ସେ ମାୱଲ ନାମକ ଗୋଟିଏ ପାର୍ବତୀୟ ଜାତିକୁ ଯୁଦ୍ଧଶିକ୍ଷା ଦେଇ ସେମାନଙ୍କ ସାହାଯ୍ୟରେ ବିଜାପୁରର କେତେକ ଦୁର୍ଗ ଅଧିକାର କଲେ ଓ ରାୟଗଡ଼ ଦୁର୍ଗ ନିର୍ମାଣ କରିଥିଲେ । ବିଜାପୁରର ସୁଲ୍‌ତାନ୍ ଏଥିରେ ରାଗିଯାଇ ତାଙ୍କ ପିତା ସାହାଜୀଙ୍କୁ ବନ୍ଦୀ କଲେ । ଶିବାଜୀ ସାହାଜାହାନଙ୍କ ସହିତ ସନ୍ଧି କରିବାରୁ ସୁଲ୍‌ତାନ ସାହାଜୀଙ୍କୁ ମୁକ୍ତ କରିଦେଲେ । ସାହାଜାହାନଙ୍କ ପୁଅମାନଙ୍କ ମଧ୍ୟରେ ସିଂହାସନ ପାଇଁ କଳି ଲାଗିବାବେଳେ ଶିବାଜୀ ବିଜାପୁର ଓ ମୋଗଲ୍ ସାମ୍ରାଜ୍ୟ ଲୁଣ୍ଠନ କଲେ । ବିଜାପୁରର ସୁଲ୍‌ତାନ୍ ସେନାପତି ଅଫଜଲ୍‌ଖାଁଙ୍କୁ ଶିବାଜୀଙ୍କୁ ଦମନ କରିବା ପାଇଁ ପଠାଇଲେ । ଶିବାଜୀ ଯୁଦ୍ଧ ନକରି ସନ୍ଧି ପ୍ରସ୍ତାବ କଲେ । ଅଫଜଲ୍‌ଖାଁ ଶିବାଜୀଙ୍କୁ ଦେଖା

କରିବା ବାହାନାରେ ତାଙ୍କୁ ହତ୍ୟା କରିବାପାଇଁ ଗୋଟିଏ ନିର୍ଜନ ସ୍ଥାନକୁ



ଡାକିଥିଲେ । ଚତୁର ଶିବାଜୀ ବିପଦ ଆଶଙ୍କା କରି ପ୍ରସ୍ତୁତ ହୋଇ ତାଙ୍କୁ ଭେଟିଲେ । ଅଫ୍‌ଜଲ୍ ଖାଁ ଶିବାଜୀଙ୍କୁ ଆଲିଙ୍ଗନ କଲାବେଳେ ଖଡ୍‌ଗପ୍ରହାର କଲେ । ଶିବାଜୀଙ୍କ ଦେହରେ ସାଞ୍ଜୁ ଥିବାରୁ ସେ ରକ୍ଷା ପାଇଲେ ଓ ସେ ବାଘନଖ ନାମକ ଅସ୍ତ୍ରଦ୍ୱାରା ଅଫ୍‌ଜଲ୍‌ଙ୍କୁ ହତ୍ୟା କଲେ । ଅଫ୍‌ଜଲ୍‌ଙ୍କ ସୈନ୍ୟମାନେ ପରାସ୍ତ ହେଲେ ଓ ବିଜାପୁର ସୁଲ୍‌ତାନ ତାଙ୍କ ସହିତ ସନ୍ଧି କଲେ ।

**ମୋଗଲ ସମ୍ରାଟ୍ ଓ ଶିବାଜୀ** :—ଶିବାଜୀ ମୋଗଲ ସାମ୍ରାଜ୍ୟ ଆକ୍ରମଣ ଓ ଲୁଣ୍ଠନ କରିବାରୁ ତାଙ୍କୁ ଦମନ କରିବାପାଇଁ ଆଉରଙ୍ଗଜେବ ଶାୟସ୍ତାଖାଁଙ୍କୁ ପଠାଇଲେ । ଶାୟସ୍ତାଖାଁ ପୁନା ଦଖଲ କରି ଶିବିର ମଧ୍ୟରେ ରାତିରେ ବିଶ୍ରାମ କରୁଥିଲାବେଳେ ଶିବାଜୀ ତାଙ୍କୁ ଆକ୍ରମଣ କଲେ । ପ୍ରାଣଭୟରେ ଶାୟସ୍ତା ଖାଁ ଝରକା ବାଟେ ପଳାଇବାବେଳେ ଶିବାଜୀଙ୍କ ତରୱାରିରେ ତିନୋଟି ଆଙ୍ଗୁଳି ହରାଇଲେ ଓ ତାଙ୍କ ପୁଅ ମଧ୍ୟ ନିହତ ହେଲେ ।

ଶିବାଜୀ ସୁରଟ ଲୁଣ୍ଠନ କରିବାରୁ ତାଙ୍କୁ ଶାସ୍ତି ଦେବାପାଇଁ ଆଉରଙ୍ଗଜେବ ଅମ୍ବରର ରାଜା ଜୟସିଂହଙ୍କୁ ପଠାଇଲେ । ଶିବାଜୀ ପରାସ୍ତ ହୋଇ ସନ୍ଧି କଲେ । ଆଉରଙ୍ଗଜେବଙ୍କ ନିର୍ଦ୍ଦେଶମତେ ଜୟସିଂହ ଶିବାଜୀଙ୍କୁ ସମ୍ମାନ ଦେଖାଇବାପାଇଁ ଦିଲ୍ଲୀକୁ ନେଇଥିଲେ । ସମ୍ମାନ ଦେବା

ଷଡ଼ଯନ୍ତ୍ରରେ ତାଙ୍କୁ ବନ୍ଦୀ କରାଗଲା । ଶିବାଜୀ କୌଶଳରେ ବନ୍ଦୀଶାଳାରୁ ଖସିଆସି ମୋଗଲ ସାମ୍ରାଜ୍ୟ ଲୁଣ୍ଠନ କଲେ ଓ ଖ୍ରୀ: ୧୬୭୪ରେ ସ୍ୱାଧୀନ-ରାଜାରୂପେ ରାୟଗଡ଼ଠାରେ ସିଂହାସନରେ ବସିଲେ । ସେ ବାରମ୍ବାର ମୋଗଲସାମ୍ରାଜ୍ୟ ଆକ୍ରମଣ ଓ ଲୁଣ୍ଠନ କରିବାରୁ ମୋଗଲ ସମ୍ରାଟ୍ ବାଧ୍ୟହୋଇ ତାଙ୍କ ସହିତ ସନ୍ଧି କଲେ ଓ ତାଙ୍କୁ ରାଜା ବୋଲି ସ୍ୱୀକାର କଲେ । ଶିବାଜୀ ପଶ୍ଚିମକର୍ଣ୍ଣାଟକୁ ନିଜ ରାଜ୍ୟଭୁକ୍ତ କଲେ ଓ ଖ୍ରୀ: ୧୬୮୦ରେ ପ୍ରାଣତ୍ୟାଗ କଲେ ।

**ଶିବାଜୀଙ୍କ ଶାସନ** :– ଶିବାଜୀ ହିନ୍ଦୁନୀତି ଅନୁସାରେ ଦେଶ ଶାସନ କରୁଥିଲେ ମଧ୍ୟ ଅନ୍ୟ ଧର୍ମମାନଙ୍କ ପ୍ରତି ଉଦାର ଥିଲେ । ଗୋଟିଏ ମନ୍ତ୍ରୀସଭାର ପରାମର୍ଶରେ ସେ ଶାସନ ଚଳାଉଥିଲେ । ଏହି ସଭାରେ ଥିବା ଆଠ ଜଣ ମନ୍ତ୍ରୀଙ୍କୁ 'ଅଷ୍ଟପ୍ରଧାନ' କୁହାଯାଉଥିଲା । ପେଶବା ମନ୍ତ୍ରୀମାନଙ୍କ ମଧ୍ୟରେ ପ୍ରଧାନ । ଶିବାଜୀଙ୍କ ଶାସନ ତିନୋଟି ବିଭାଗରେ ବିଭକ୍ତ ଥିଲା ।

ସେ ତାଙ୍କ ରାଜ୍ୟ ପ୍ରାନ୍ତ, ତାଲୁକ, ପ୍ରଗଣା ଓ ମୌଜାରେ ବିଭକ୍ତ କରିଥିଲେ । ପ୍ରାନ୍ତ ବା ପ୍ରଦେଶରେ ପ୍ରାଦେଶିକ ଶାସନକର୍ତ୍ତାମାନେ ଶିବାଜୀଙ୍କ ଦ୍ୱାରା ନିଯୁକ୍ତ ହୋଇ ମନ୍ତ୍ରୀସଭା ପରାମର୍ଶରେ ଶାସନ ଚଳାଉଥିଲେ । ପ୍ରତ୍ୟେକ ଗ୍ରାମରେ ଜଣେ ଲେଖାଏଁ ପଟେଲ ଓ କେତେଜଣ ପଟେଲଙ୍କ ଉପରେ ଜଣେ ଲେଖାଏଁ ଦେଶାଧିକାରୀ ଥିଲେ । ପଞ୍ଚାୟତମାନେ ମକଦ୍ଦମା ବିଚାର କରୁଥିଲେ । ଭୂମି ଆୟର ପାଞ୍ଚଭାଗରୁ ଦୁଇଭାଗ କରଧାର୍ଯ୍ୟ ହେଉଥିଲା ଓ ପଡ଼ୋଶୀ ରାଜ୍ୟମାନଙ୍କଠାରୁ 'ଚୌଥ' (ରାଜସ୍ୱର ଚାରିଭାଗରୁ ଭାଗେ) ଓ 'ସରଦେଶମୁଖୀ' (ଦଶଭାଗରୁ ଭାଗେ) ଆଦାୟ କରା-ଯାଉଥିଲା । ଯେଉଁ ରାଜ୍ୟମାନେ ଏହି ଦୁଇଟି କର ଦେଉଥିଲେ ଶିବାଜୀ ସେମାନଙ୍କ ରାଜ୍ୟ ଆକ୍ରମଣ କରୁ ନ ଥିଲେ ।

ତାଙ୍କର ଅନେକ ଅଶ୍ୱାରୋହୀ, ଗଜାରୋହୀ ଓ ପଦାତିକ ସୈନ୍ୟ ଥିଲେ ଓ କେତେଗୁଡ଼ିଏ ଯୁଦ୍ଧଜାହାଜ ମଧ୍ୟ ଥିଲା । ସୈନ୍ୟମାନେ ସଙ୍କେତ ପାଇଲାମାତ୍ରେ ଏକଯୁଟ୍ ହେଉଥିଲେ ଓ ପଳାଇ ଯାଉଥିଲେ । ତାଙ୍କର ବର୍ଗୀ ଓ ସିଲେଦାର ନାମରେ ଦୁଇ ଶ୍ରେଣୀର ସୈନ୍ୟ ଥିଲେ । ସ୍ଥାୟୀ ସୈନ୍ୟ ବର୍ଗୀମାନେ ଦରମା ପାଉଥିଲେ ଓ ଅସ୍ଥାୟୀ ସୈନ୍ୟ ସିଲେଦାରମାନେ କେବଳ ଯୁଦ୍ଧବେଳେ ଯୋଗ ଦେଉଥିଲେ । ଜାଗିର ପରିବର୍ତ୍ତେ ସୈନ୍ୟମାନେ ଦରମା ପାଉଥିଲେ ।

ସେ ସୈନ୍ୟବିଭାଗରେ ଶୃଙ୍ଖଳା ଆଣିଥିଲେ । ଦଶଜଣ ସୈନ୍ୟଙ୍କ ଉପରେ ଜଣେ 'ନାୟକ', ପାଞ୍ଚଜଣ ନାୟକଙ୍କ ଉପରେ ଜଣେ 'ହାବିଲଦାର', ଦୁଇଜଣ ହାବିଲଦାରଙ୍କ ଉପରେ ଜଣେ 'ଜୁମଲାଦାର', ଦଶଜଣ ଜୁମଲାଦାରଙ୍କ ଉପରେ ଜଣେ 'ଏକହଜାରୀ' ସେନାପତି ଓ ପାଞ୍ଚଜଣ ଏକହଜାରୀ ସେନାପତି ଉପରେ ଜଣେ 'ସରନୌବତ' ବା 'ମୁଖ୍ୟ' ଥିଲେ ।

**ଶିବାଜୀଙ୍କ ଚରିତ୍ର :**—ଶିବାଜୀ ନିଷ୍ଠାପର ହିନ୍ଦୁରାଜା ଥିଲେ ମଧ୍ୟ ଅନ୍ୟ ଧର୍ମକୁ ଘୃଣା କରୁ ନଥିଲେ । ଯୁଦ୍ଧବେଳେ କୋରାନ୍, ମୁସଲମାନ୍ ସ୍ତ୍ରୀ ଓ ବାଳକମାନଙ୍କର କିଛି କ୍ଷତି କରୁ ନ ଥିଲେ । ସେ ବଡ଼ ସାହସୀ, ବୁଦ୍ଧିମାନ୍, ଯୋଦ୍ଧା, ସଂଗଠକ ଓ କଷ୍ଟସହିଷ୍ଣୁ ଥିଲେ ।

---

# ସପ୍ତଦଶ ଅଧ୍ୟାୟ

## ଆଉରଙ୍ଗଜେବ ( ଖ୍ରୀ: ୧୬୫୮—ଖ୍ରୀ: ୧୭୦୭ )

ଆଉରଙ୍ଗଜେବ ଭାଇମାନଙ୍କୁ ପରାସ୍ତକରି ଓ ପିତାଙ୍କୁ ବନ୍ଦୀକରି ଦିଲ୍ଲୀ ସିଂହାସନରେ ବସିଲେ ।

**ଶାସନ ନୀତି :**—ଭାରତବର୍ଷରେ ମୁସଲମାନ୍‌ରାଜ୍ୟ ପ୍ରତିଷ୍ଠା ଓ ଇସଲାମ୍ ଧର୍ମ ପ୍ରଚାର କରିବା ତାଙ୍କର ନୀତି ଥିଲା । ନିଜ ଧର୍ମରେ

ତାଙ୍କର ସଂକୀର୍ଣ୍ଣତା ଥିଲା । ସେ ସୁନ୍ନି ସମ୍ପ୍ରଦାୟର ମୁସଲମାନ୍ ଥିବାରୁ ସିଆ ମୁସଲମାନ୍‌ମାନଙ୍କୁ, ଶିଖ ଓ ହିନ୍ଦୁମାନଙ୍କୁ ଘୃଣା କରି ସେମାନଙ୍କ ଉପରେ ଅତ୍ୟାଚାର କଲେ । ସେ ହିନ୍ଦୁମନ୍ଦିରମାନ ଭାଙ୍ଗି ହିନ୍ଦୁଙ୍କ ଉପରେ 'ଜିଜିୟା' କର ଓ 'ଯାତ୍ରୀ' କର ବସାଇ ହିନ୍ଦୁ ବଣିକଙ୍କଠାରୁ ବେଶୀ ଶୁଳ୍କ ଆଦାୟ କଲେ । ଯୋଗ୍ୟ ହିନ୍ଦୁମାନେ ଚାକିରି ପାଉ ନଥିଲେ । ରାଜପୁତମାନଙ୍କ ଛଡ଼ା ଆଉ ହିନ୍ଦୁମାନେ ପାଲିଙ୍କି, ଘୋଡ଼ା ପ୍ରଭୃତି ଚଢ଼ିବାକୁ ଅନୁମତି ପାଇଲେ ନାହିଁ । ଅକବରଙ୍କର ରାଜପୁତମାନଙ୍କ ସଙ୍ଗେ ଯେଉଁ ସମ୍ବନ୍ଧ ଥିଲା ସେ ତାହା ସମ୍ପୂର୍ଣ୍ଣରୂପେ ଓଲଟାଇ ଦେଇଥିଲେ । ଧର୍ମନୀତିକୁ ରାଜନୀତିରେ ପ୍ରବେଶ କରାଇ ଧର୍ମାନ୍ଧତାରେ ରାଜ୍ୟଶାସନ କରିବାରୁ ତାଙ୍କ ସମୟରୁ ମୋଗଲ ସାମ୍ରାଜ୍ୟର ପତନ ଆରମ୍ଭ ହେଲା ।

**ଯୁଦ୍ଧ ଓ ରାଜ୍ୟଜୟ** :—ତାଙ୍କ ସମୟରେ ଆସାମ ଅଧିକୃତ ହୋଇ ପୁନର୍ବାର ସ୍ୱାଧୀନ ହେଲା । ହିନ୍ଦୁ ମନ୍ଦିରମାନ ଧ୍ୱଂସ କରିବାରୁ ମଥୁରାର ଜାଟମାନେ ବିଦ୍ରୋହ କରିଥିଲେ । ଆଉରଙ୍ଗଜେବ ବହୁକଷ୍ଟରେ ବିଦ୍ରୋହ ଦମନ କରିଥିଲେ । ମୋଗଲ ଶାସକମାନଙ୍କ ଅତ୍ୟାଚାରରେ ପଞ୍ଜାବର 'ସତ୍‌ନାମୀ'ମାନେ ବିଦ୍ରୋହ କରିଥିଲେ । ଆଉରଙ୍ଗଜେବ୍ ସେମାନଙ୍କର ଅତ୍ୟାଚାର ଦମନ କରିଥିଲେ ଓ ସୀମାନ୍ତ ପ୍ରଦେଶର ପାହାଡ଼ିଆ ଜାତିମାନଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ କରିଥିଲେ । ଆଉରଙ୍ଗଜେବ ହିନ୍ଦୁ-ମାନଙ୍କୁ ମୁସଲମାନ୍ କରିବାପାଇଁ ବାଧ୍ୟ କରୁଥିବାରୁ ନବମ ଶିଖଗୁରୁ



ତେଗ୍‌ବାହାଦୂର୍ ହିନ୍ଦୁମାନଙ୍କୁ ମୁସଲମାନ ନ ହେବାକୁ ପ୍ରଚାର କଲେ । ଆଉରଙ୍ଗଜେବ ତାଙ୍କୁ ଧରିନେଇ ଇସଲାମଧର୍ମ ଗ୍ରହଣ କରିବାକୁ ବାଧ୍ୟ କଲେ । ସେ ବାରଣ କରିବାରୁ ଅଉରଙ୍ଗଜେବ ତାଙ୍କୁ ହତ୍ୟା କଲେ । ସେଥିପାଇଁ ଶିଖମାନେ ଅଉରଙ୍ଗଜେବଙ୍କ ବିରୁଦ୍ଧରେ ଉଠିଲେ ।

ସେ ରାଜପୁତମାନଙ୍କୁ ଘୃଣା କରୁଥିବାରୁ ସେନାପତି ଜୟସିଂହଙ୍କୁ ବିଷ ଦେଇ ମାରିଥିଲେ । ଯୋଧପୁର ରାଜା ସେନାପତି ଯଶୋବନ୍ତ ସିଂହ କାବୁଲ ବିଦ୍ରୋହ ଦମନ କରି ଫେରିବାବେଳେ ଅଉରଙ୍ଗଜେବ ତାଙ୍କୁ କୌଶଳରେ ହତ୍ୟା କଲେ ଓ ତାଙ୍କର ଶିଶୁପୁତ୍ର ଅଜିତ ସିଂହ ଓ ବିଧବା ସ୍ତ୍ରୀଙ୍କୁ ବନ୍ଦୀ କଲେ । ସେ ଯୋଧପୁର ଅଧିକାର କରି ହିନ୍ଦୁକୀର୍ତ୍ତିମାନ ଧ୍ୱଂସ କଲେ ଓ ହିନ୍ଦୁମାନଙ୍କ ଉପରେ ଅତ୍ୟାଚାର କଲେ । ଯଶୋବନ୍ତଙ୍କ ବନ୍ଧୁ ଦୁର୍ଗା ଦାସ ଅଜିତ ସିଂହ ଓ ତାଙ୍କ ମାଙ୍କୁ କୌଶଳରେ ଉଦ୍ଧାର କଲେ ଓ ମିବାରର ରାଣାଙ୍କ ସାହାଯ୍ୟରେ ଅଉରଙ୍ଗଜେବଙ୍କୁ ଯୁଦ୍ଧରେ ପରାସ୍ତ କଲେ । ଶେଷରେ ସନ୍ଧି ହେଲା । ଯେଉଁ ରାଜପୁତମାନେ ମୋଗଲ୍ ସାମ୍ରାଜ୍ୟ ଗଢ଼ିଥିଲେ ସେମାନେ ଅଉରଙ୍ଗଜେବଙ୍କର ଧର୍ମାନ୍ଧତା ଯୋଗୁଁ ମୋଗଲ୍ ସାମ୍ରାଜ୍ୟ ପତନର କାରଣ ହୋଇଥିଲେ ।

ସେ ହିନ୍ଦୁମାନଙ୍କ ଉପରେ ଅତ୍ୟାଚାର କରିବାରୁ ଶିବାଜୀ ମରହଟ୍ଟାମାନଙ୍କୁ ମତାଇ ମୋଗଲ୍ ସାମ୍ରାଜ୍ୟ ଲୁଣ୍ଠନ କଲେ ଓ ଗୋଟିଏ ହିନ୍ଦୁରାଜ୍ୟ ପ୍ରତିଷ୍ଠା କଲେ । ଅଉରଙ୍ଗଜେବ ଶିବାଜୀଙ୍କ ପୁଅ ଶମ୍ଭୁଜୀଙ୍କୁ ହତ୍ୟାକଲେ ଓ ତାଙ୍କ ପୁଅ ସାହୁଜୀଙ୍କୁ ବନ୍ଦୀକଲେ । ତଥାପି ମରହଟ୍ଟାମାନେ ଶମ୍ଭୁଜୀଙ୍କ ଭାଇ ରାଜାରାମଙ୍କୁ ସିଂହାସନରେ ବସାଇ ଅଉରଙ୍ଗଜେବଙ୍କ ବିରୁଦ୍ଧରେ ଯୁଦ୍ଧ ଚଳାଇଲେ । ରାଜାରାମଙ୍କ ପରେ ତାଙ୍କ ରାଣୀ ତାରାବାଈ ଅଉରଙ୍ଗଜେବଙ୍କ ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କ ସହିତ ଯୁଦ୍ଧ ଚଳାଇଥିଲେ ।

ବିଜାପୁର ଓ ଗୋଲକୁଣ୍ଡାର ମୁସଲମାନ୍ ଶାସକମାନେ ସିଆ ମୁସଲମାନ୍ ଥିବାରୁ ଧର୍ମାନ୍ଧ ଅରଙ୍ଗଜେବ ବହୁ ଯୁଦ୍ଧପରେ ବିଜାପୁର ଓ ଗୋଲକୁଣ୍ଡାକୁ ମୋଗଲ୍‌ସାମ୍ରାଜ୍ୟଭୁକ୍ତ କଲେ । ସେ ଆଶା କରିଥିଲେ ଏହି ଦୁଇଟି ରାଜ୍ୟ ତାଙ୍କର ଅଧୀନ ହେଲେ ସେ ସମସ୍ତ ଶକ୍ତି ଖଟାଇ ଦାକ୍ଷିଣାତ୍ୟରେ ମରହଟ୍ଟାମାନଙ୍କ ସହିତ ଲଢ଼ିବେ । ତାଙ୍କର ଧାରଣା ଭୁଲ ଥିଲା । ବିଜାପୁର ଓ ଗୋଲକୁଣ୍ଡା ସ୍ୱାଧୀନତା ହରାଇବାରୁ ମରହଟ୍ଟାମାନେ ଦାକ୍ଷିଣାତ୍ୟରେ ଶତ୍ରୁଶୂନ୍ୟ ହେଲେ ଓ ମୋଗଲସମ୍ରାଟଙ୍କ ବିରୁଦ୍ଧରେ ଭୀଷଣ ଯୁଦ୍ଧ ଚଳାଇଲେ । ଦାକ୍ଷିଣାତ୍ୟ ଯୁଦ୍ଧ ଚଳାଇବାରେ ଅରଙ୍ଗଜେବଙ୍କର ବହୁ ଧନ ବ୍ୟୟ ଓ ଲୋକ କ୍ଷୟ ହେଲା । ଦେଶରେ ବିଦ୍ରୋହ ଓ ଦୁର୍ଭିକ୍ଷ ଦେଖାଗଲା । ଶେଷରେ ଅରଙ୍ଗଜେବ ହତାଶରେ ଖ୍ରୀ: ୧୭୦୭ ରେ ପ୍ରାଣତ୍ୟାଗ କଲେ । ତାଙ୍କର ଧର୍ମାନ୍ଧତା ଯୋଗୁଁ ମୋଗଲ-ସାମ୍ରାଜ୍ୟର ପତନ ଆରମ୍ଭ ହେଲା ।

**ଚରିତ୍ର** :—ଅରଙ୍ଗଜେବ ଜଣେ ନୈଷ୍ଠିକ ମୁସଲମାନ୍ ଥିଲେ । ସେ କୋରାନ୍ ମୁଖସ୍ଥ କରିଥିଲେ ଓ କୋରାନ୍‌ର ନିୟମ ମାନି ଚଳୁଥିଲେ ; ନିଜ ହାତରେ ଟୋପି ସିଲାଇ କରି ଓ କୋରାନ୍ ଲେଖି ଯାହା ଅର୍ଜନ କରୁଥିଲେ ତାହାଦ୍ୱାରା ସରଳ ଓ ନିରାଡ଼ମ୍ବର ଜୀବନ ଯାପନ କରୁଥିଲେ । ସେ ବଡ଼ ପରିଶ୍ରମୀ ଥିବାରୁ ସମୁଦାୟ ରାଜକାର୍ଯ୍ୟର ତତ୍ତ୍ୱ ନେଉଥିଲେ । ସେ ସନ୍ଦେହୀ ଓ ସ୍ୱାର୍ଥପର ଥିଲେ । କେହି ଶକ୍ତିଶାଳୀ ହେବାକୁ ସେ ଇଚ୍ଛା କରୁ ନ ଥିଲେ । ତାଙ୍କ ପାଖରେ ସ୍ନେହ ମମତା ନ ଥିବାରୁ ସେ ଭାଇମାନଙ୍କୁ ହତ୍ୟା କରିଥିଲେ ଓ ପିତାଙ୍କୁ ବନ୍ଦୀ କରିଥିଲେ ।

**ମୋଗଲ ସାମ୍ରାଜ୍ୟର ପତନ** :—ଅରଙ୍ଗଜେବଙ୍କର ବଂଶଧର-ମାନେ ଦୁର୍ବଳ ଥିଲେ । ତେଣୁ ପ୍ରାଦେଶିକ ଶାସନକର୍ତ୍ତାମାନେ ସ୍ୱାଧୀନ ହେଲେ ଓ ହିନ୍ଦୁ, ଶିଖ ପ୍ରଭୃତି ନୂତନ ରାଜ୍ୟ ପ୍ରତିଷ୍ଠା କଲେ । କ୍ରମେ ମୋଗଲ୍ ସାମ୍ରାଜ୍ୟ ସଙ୍କୁଚିତ ହୋଇ ଲୋପ ପାଇଲା ।

ଅରଙ୍ଗଜେବଙ୍କ ପୁଅ **ବାହାଦୂର ଶାହ** ଖ୍ରୀଃ ୧୭୦୭ରୁ ଖ୍ରୀଃ ୧୭୧୨ ପର୍ଯ୍ୟନ୍ତ ସମ୍ରାଟ୍ ହେଲେ । ସେ ସାହୁଙ୍କୁ ମୁକ୍ତ କରି ମରହଟ୍ଟାମାନଙ୍କ ସହିତ ଓ ଅଜିତ ସିଂହଙ୍କୁ ଯୋଧପୁରର ରଣା ବୋଲି ମାନି ରାଜପୁତମାନଙ୍କ ସହିତ ସନ୍ଧି କରିଥିଲେ । ତାଙ୍କ ସମୟରେ ଶିଖମାନେ ପରାକ୍ରମୀ ହୋଇ ମୋଗଲ ସାମ୍ରାଜ୍ୟ ଆକ୍ରମଣ କଲେ ।

ବାହାଦୁର ସାହଙ୍କ ପରେ ଜାହାନ୍ଦରସାହ ସମ୍ରାଟ୍ ହେଲେ । ପାଟଣାର ସହକାରୀ ଶାସନକର୍ତ୍ତା ହୁସେନ୍‌ଅଲି ଓ ଏଲାହାବାଦର ଶାସନକର୍ତ୍ତା ସୟଦ୍ ଅବଦୁଲ୍ଲା କ୍ଷମତାଶାଳୀ ହୋଇ ଜାହାନ୍ଦରଙ୍କୁ ହତ୍ୟା କଲେ ଓ ଫରୁକ୍‌ସେୟାରଙ୍କୁ ସିଂହାସନରେ ବସାଇଥିଲେ ! ସୟଦ ଭ୍ରାତାଦ୍ୱୟ ସର୍ବେସର୍ବା ହେଲେ । ସେମାନେ ଫରୁକ୍‌ସେୟାରଙ୍କୁ ହତ୍ୟା କରି ଅନ୍ୟ ଦୁଇଜଣଙ୍କୁ ସିଂହାସନରେ ବସାଇଥିଲେ । ଖ୍ରୀଃ ୧୭୧୯ ରେ ସେମାନେ ମହମ୍ମଦସାହଙ୍କୁ ସିଂହାସନରେ ବସାଇଲେ । ମହମ୍ମଦସାହ କୌଶଳରେ ସେମାନଙ୍କୁ ହତ୍ୟା କରି ଖ୍ରୀଃ ୧୭୪୮ ପର୍ଯ୍ୟନ୍ତ ଶାସନ କରିଥିଲେ ।

ଅସଫ୍‌ଝା ଖ୍ରୀଃ ୧୭୨୩ରେ ହାଇଦ୍ରାବାଦର ସ୍ୱାଧୀନତା ଘୋଷଣା କଲେ । ବଙ୍ଗଳାର ସୁବାଦାର ଆଲିବର୍ଦ୍ଦିଖାଁଙ୍କ ଅଧୀନରେ ବିହାର ଓ ଓଡ଼ିଶା ଥିଲା । ସେ ମଧ୍ୟ ଖ୍ରୀଃ ୧୭୪୦ରେ ସ୍ୱାଧୀନ ହେଲେ । ଅଯୋଧ୍ୟାର ନବାବ ସାଦତ୍‌ଅଲି ସ୍ୱାଧୀନ ହେଲେ । ମାଳବ, ଗୁଜରାଟ, ଅମ୍ବର, ଯୋଧପୁର ପ୍ରଭୃତି ରାଜ୍ୟମାନ ସ୍ୱାଧୀନ ହେଲେ ରୋହିଲାମାନେ ରୋହିଲାଖଣ୍ଡରେ, ଜାଟମାନେ ଭରତପୁରରେ ଓ ଶିଖମାନେ ପଞ୍ଜାବରେ ସ୍ୱାଧୀନ ରାଜ୍ୟମାନ ସ୍ଥାପନ କଲେ । ପାରସ୍ୟର ରାଜା ନାଦିରଶାହ ଭାରତ ଆକ୍ରମଣ କରି ମୋଗଲ ସାମ୍ରାଜ୍ୟକୁ ଅଧିକ ଦୁର୍ବଳ କରିଥିଲେ ।

**ନାଦିରସାହଙ୍କ ଭାରତ ଆକ୍ରମଣ** :—ପାରସ୍ୟର ସମ୍ରାଟ୍ ନାଦିରସାହ ଖ୍ରୀଃ ୧୭୩୯ରେ ଭାରତ ଆକ୍ରମଣ କରି ଦିଲ୍ଲୀରେ ପ୍ରବେଶ



କରିବାରୁ ମହମ୍ମଦସାହ ତାଙ୍କଠାରେ ଆତ୍ମ-ସମର୍ପଣ କଲେ । ଜନରବ ଉଠିଲା ଯେ ନାଦିରସାହ ମରିଯାଇଛନ୍ତି । ଦିଲ୍ଲୀବାସୀ ନାଦିରସାହଙ୍କର କେତେକ ସୈନ୍ୟଙ୍କୁ ହତ୍ୟା କରିବାରୁ ସେ ରାଗିଯାଇ ଦିଲ୍ଲୀବାସୀଙ୍କୁ ହତ୍ୟା କରିବାକୁ ତାଙ୍କର ସୈନ୍ୟମାନଙ୍କୁ ଆଦେଶ ଦେଲେ । ସେମାନେ ବହୁତ ଦିଲ୍ଲୀବାସୀଙ୍କୁ ହତ୍ୟାକଲେ ଓ ବହୁ ଧନରତ୍ନ ଲୁଣ୍ଠନ କଲେ । ଏହି ଧନରତ୍ନ, ସାହାଜାହାନଙ୍କ ମୟୂର ସିଂହାସନ, ବିଖ୍ୟାତ କୋହିନୂର ହୀରକ ଓ ବହୁ ଦାସ ନେଇ ନାଦିରସାହ ପାରସ୍ୟକୁ ଫେରିଗଲେ । ସିନ୍ଧୁନଦୀର ପଶ୍ଚିମରେ ଥିବା ସମୁଦାୟ ରାଜ୍ୟ ତାଙ୍କ ରାଜ୍ୟଭୁକ୍ତ ହେଲା ।

ଅହମ୍ମଦସାହ ଦୁରାଣୀ ମଧ୍ୟ ସାତଥର ଭାରତ ଆକ୍ରମଣ କରି ବହୁତ ହତ୍ୟା ଓ ଲୁଣ୍ଠନ କରିଥିଲେ । ସେ ପଞ୍ଜାବକୁ ନିଜ ରାଜ୍ୟରେ ମିଶାଇ ଥିଲେ । ଏହି ଦୁଇ ବିଦେଶୀ ଆକ୍ରମଣକାରୀଙ୍କ ଦ୍ୱାରା ମୋଗଲସାମ୍ରାଜ୍ୟର ପତନ ହୋଇଥିଲା ।

ମହମ୍ମଦସାହଙ୍କ ପରେ ମୋଗଲ ସମ୍ରାଟମାନେ ନାମକୁ ମାତ୍ର ରାଜପଣ କରୁଥିଲେ । ସେମାନେ କେତେବେଳେ ମରହଟ୍ଟାମାନଙ୍କର ଓ କେତେବେଳେ ଇଂରେଜମାନଙ୍କର ଆଶ୍ରୟରେ ରହୁଥିଲେ । ସିପାହୀ-ବିଦ୍ରୋହ ପରେ ଇଂରେଜମାନେ ତାଙ୍କ ବଂଶକୁ ଲୋପ କରି ଦେଇଥିଲେ ।

**ମୋଗଲ ସାମ୍ରାଜ୍ୟର ପତନର କାରଣ :—** ଆରଙ୍ଗଜେବଙ୍କର ଧର୍ମାନ୍ଧତା ମୋଗଲସାମ୍ରାଜ୍ୟର ପତନର ପ୍ରଧାନ କାରଣ ଥିଲା ।

ଅତ୍ୟାଚାରିତ ରାଜପୁତ, ମରହଟ୍ଟା ଓ ଶିଖମାନେ ଯୁଦ୍ଧ କରି ମୋଗଲ୍-ସାମ୍ରାଜ୍ୟକୁ ଛାରଖାର କରିଥିଲେ । ଆଉରଙ୍ଗଜେବଙ୍କ ଦୁର୍ବଳ ବଂଶଧର-ମାନେ ଦେଶ ଶାସନରେ ଶୃଙ୍ଖଳା ରଖି ପାରିଲେ ନାହିଁ । ସିଂହାସନ ପାଇଁ ସେମାନଙ୍କ ମଧ୍ୟରେ ବାରମ୍ବାର ଷଡ଼ଯନ୍ତ୍ର ଲାଗିଥିଲା । ପ୍ରାଦେଶିକ ଶାସନ-କର୍ତ୍ତାମାନେ ସ୍ୱାଧୀନ ହେଲେ । ଦୁର୍ବଳ ମୋଗଲ ସମ୍ରାଟ୍‌ମାନେ ସୀମାନ୍ତ ଦୃଢ଼ କରି ନ ପାରିବାରୁ ନାଦରସାହ ପ୍ରଭୃତି ବିଦେଶୀ ଆକ୍ରମଣକାରୀମାନେ ଭାରତରେ ବହୁତ ଲୁଣ୍ଠନ ଓ ନରହତ୍ୟା କଲେ । ବିଦେଶରୁ ଆସିଥିବା କର୍ମଚାରୀମାନେ ସ୍ୱାର୍ଥପର ହୋଇ ରାଜ୍ୟର ଉନ୍ନତି ପାଇଁ ଦୃଷ୍ଟି ଦେଉ ନ ଥିଲେ । ସୈନିକମାନେ ମଧ୍ୟ ବିଳାସୀ ହେବାରୁ ଦେଶ ଭିତରର ଓ ବାହାରର ଶତ୍ରୁମାନଙ୍କୁ ବାଧା ଦେଇପାରି ନ ଥିଲେ । ମୋଗଲ ସମ୍ରାଟ୍-ମାନଙ୍କର ନୌବଳ ନ ଥିବାରୁ ଇଂରେଜମାନେ ସହଜରେ ମୋଗଲ୍ ସାମ୍ରାଜ୍ୟକୁ ଦଖଲ କରିଥିଲେ ।

---

# ଅଷ୍ଟାଦଶ ଅଧ୍ୟାୟ

## ପେଶବା ଓ ମରହଟ୍ଟା ଶକ୍ତିର ଅବସାନ

ଆଉରଙ୍ଗଜେବ ସାହୁଜୀଙ୍କୁ ବନ୍ଦୀ କରିଥିଲେ ମଧ୍ୟ ରାଜାରାମ ଓ ତାଙ୍କ ପରେ ତାଙ୍କ ସ୍ତ୍ରୀ ତାରାବାଈ ଆଉରଙ୍ଗଜେବଙ୍କ ସଙ୍ଗେ ଯୁଦ୍ଧ ଚଳାଇ-ଥିଲେ । ତାରାବାଈ ନିଜର ଶିଶୁପୁତ୍ର ତୃତୀୟ ଶିବାଜୀଙ୍କ ନାମରେ ଦେଶ ଶାସନ କରୁଥିଲେ ।

ସାହୁଜୀ କାରାମୁକ୍ତ ହୋଇ ଆସିବାରୁ ଦଳେ ମରହଟ୍ଟା ତାଙ୍କୁ ଓ ଆଉ ଦଳେ ତୃତୀୟ ଶିବାଜୀଙ୍କୁ ରାଜା ବୋଲି ସମର୍ଥନ କଲେ । ମରହଟ୍ଟା-

ମାନେ ଦୁଇ ଦଳ ହୋଇ ଯୁଦ୍ଧ କଲେ । ବାଲାଜୀ ବିଶ୍ୱନାଥ ନାମକ ଜଣେ ବ୍ରାହ୍ମଣଙ୍କ ସାହାଯ୍ୟରେ ସାହୁଜୀ ସାତାରାରେ ରାଜା ହେବାରୁ ସେ ବାଲଜୀ ବିଶ୍ୱନାଥଙ୍କୁ ପ୍ରଧାନ ମନ୍ତ୍ରୀ ବା ପେଶବା କଲେ । ବାଲଜୀ ବିଶ୍ୱନାଥଙ୍କ ଚେଷ୍ଟାରେ ସାହୁଜୀ ଦାକ୍ଷିଣାତ୍ୟରୁ ଚୌଥ ଓ ସରଦେଶମୁଖୀ ଆଦାୟ କଲେ । ବାଲଜୀ ବିଶ୍ୱନାଥଙ୍କ ପରେ ପେଶବା ପଦ ପୁରୁଷାନୁକ୍ରମିକ ହେଲା ଓ ମରହଟ୍ଟା ଶକ୍ତି ପେଶବାଙ୍କ ହାତକୁ ଗଲା । ସାହୁଜୀଙ୍କ ବଂଶଧର-ମାନେ ଦୁର୍ବଳ ହୋଇ ସାତାରା ଓ କୋହ୍ଲାପୁରରେ ଶାସନ କରିବାକୁ ଲାଗିଲେ ।

ବାଲଜୀ ବିଶ୍ୱନାଥଙ୍କ ପରେ ପ୍ରଥମ ବାଜୀରାଓ ପେଶବା ହେଲେ । ସେ ରାଜପୁତମାନଙ୍କ ସାହାଯ୍ୟରେ ବୁନ୍ଦେଲଖଣ୍ଡ, ମାଳବ, ଗୁଜରାଟ ଜୟ କରି ଦିଲ୍ଲୀ ପର୍ଯ୍ୟନ୍ତ ଅଗ୍ରସର ହେବାରୁ ଦିଲ୍ଲୀସମ୍ରାଟ୍ ତାଙ୍କ ସହିତ ସନ୍ଧି କରିଥିଲେ । ସେ ପର୍ତ୍ତୁଗୀଜମାନଙ୍କଠାରୁ ସାଲସେଟ୍ ଓ ବେସିନ୍ ଛଡ଼ାଇ ନେଇଥିଲେ । ବାଜୀରାଓ ଦେଶକୁ ଭାଗ ଭାଗ କରି ସେନାପତିମାନଙ୍କ ଅଧୀନରେ ରଖିଥିଲେ । ଏହି ସେନାପତିମାନେ ସ୍ୱାଧୀନ ହୋଇ ଗୋଟିଏ ସ୍ୱାଧୀନ ରାଜ୍ୟ ସ୍ଥାପନ କଲେ । ନାଗପୁରରେ ଭୋନ୍‌ସ୍‌ଲା, ଇନ୍ଦୋରରେ ହୋଲ୍‌କାର୍, ଗୋଆଲିଅରରେ ସିନ୍ଧିଆ ଓ ବରୋଦାରେ ଗାଇକୋବାଡ଼୍ ବଂଶ ଶାସନ କଲେ ଓ ପେଶବାମାନେ ପୁନାରେ ଶାସନ କଲେ । ଏହିପରି ପାଞ୍ଚୋଟି ମରହଟ୍ଟା ବଂଶର ସୃଷ୍ଟି ହେଲା ।

ବାଜୀରାଓଙ୍କ ପରେ ତାଙ୍କ ପୁଅ ବାଲଜୀ ବାଜୀରାଓ ପେଶବା ହେଲେ । ତାଙ୍କ ସମୟରେ ମରହଟ୍ଟାମାନେ ସର୍ବଶ୍ରେଷ୍ଠ ଶକ୍ତି ହୋଇଥିଲେ ଓ ପଞ୍ଜାବ ଅଧିକାର କରିଥିଲେ । ଅହମ୍ମଦସାହ ଦୁରାନୀଙ୍କ ପୁଅ ପଞ୍ଜାବରୁ ତଡ଼ାଖାଇବାରୁ ଅହମ୍ମଦସାହ ବହୁ ସୈନ୍ୟ ଘେନି ପାଣିପଥଠାରେ ମରହଟ୍ଟାମାନଙ୍କୁ ଭେଟିଲେ । ବାଲଜୀ ବାଜୀରାଓ ନିଜେ ଯୁଦ୍ଧକୁ ନ ଆସି

ସଦାଶିବ ରାଓ ଭାଓଙ୍କୁ ଯୁଦ୍ଧ କରିବାକୁ ପଠାଇଥିଲେ । ଖ୍ରୀଃ ୧୭୬୧ ରେ ମରହଟ୍ଟା ଓ ଅହମ୍ମଦସାହଙ୍କ ସୈନ୍ୟମାନଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ହେଲା । ଏହାକୁ **ତୃତୀୟ ପାନିପଥ ଯୁଦ୍ଧ** କହନ୍ତି । ତିନିମାସ ଯୁଦ୍ଧପରେ ସଦାଶିବ ରାଓ, ସମୁଦାୟ ମରହଟ୍ଟା ବୀର ଓ ଅସଂଖ୍ୟ ମରହଟ୍ଟା ସୈନ୍ୟ ଯୁଦ୍ଧରେ ନିହତ ହେଲେ । ତୃତୀୟଥର ପାଇଁ ପାନିପଥ କ୍ଷେତ୍ରରେ ବିଦେଶୀମାନେ ଜୟଲାଭ କଲେ ।

ତୃତୀୟ ପାନିପଥ ଯୁଦ୍ଧପରେ ମରହଟ୍ଟାମାନେ ଦୁର୍ବଳ ହୋଇ ଛୋଟ ଛୋଟ ରାଜ୍ୟରେ ରାଜପଣ କରିବାକୁ ଲାଗିଲେ । ସେମାନେ ସଂଗଠିତ ନ ହେବାରୁ ଇଂରେଜମାନେ ସହଜରେ ସେମାନଙ୍କୁ ପରାସ୍ତକରି ଇଂରେଜସାମ୍ରାଜ୍ୟ ପ୍ରତିଷ୍ଠା କଲେ । ଏହାପରେ ମରହଟ୍ଟା ଶକ୍ତି ଲୋପ ପାଇଲା ।

---

# ଊନବିଂଶ ଅଧ୍ୟାୟ

## ଗୁରୁ ନାନକ ଓ ଶିଖଜାତିର ଅଭ୍ୟୁତ୍‌ଥାନ

ଦିଲ୍ଲୀର ସୁଲତାନ୍‌ମାନେ ଦୁର୍ବଳ ହେବାବେଳେ ହିନ୍ଦୁଧର୍ମକୁ ପୁନର୍ବାର ଲୋକପ୍ରିୟ କରିବାକୁ ବହୁତ ଧର୍ମସଂସ୍କାରକ ବାହାରିଥିଲେ । ଗୁରୁ ନାନକ ସେମାନଙ୍କ ମଧ୍ୟରୁ ଜଣେ ।

**ନାନକ** :—ସେ ପଞ୍ଚଦଶ ଶତାବ୍ଦୀରେ ପଞ୍ଜାବରେ ଜନ୍ମ ହୋଇଥିଲେ । ମୁସଲମାନ୍ ଓ ହିନ୍ଦୁଧର୍ମର ସାରନୀତି ଗ୍ରହଣ କରି ସେ ଶିଖଧର୍ମ ପ୍ରଚାର କରିଥିଲେ । 'ଶିଖ' ଶବ୍ଦର ଅର୍ଥ 'ଶିଷ୍ୟ' । ସେ ଜାତିଭେଦ ଉଠାଇ ଦେଇ ହିନ୍ଦୁ ଓ ମୁସଲମାନ୍ ଉଭୟଙ୍କୁ ନିଜ ଧର୍ମରେ ଦୀକ୍ଷିତ କରାଉଥିଲେ । ଶିଖଙ୍କର ପ୍ରଧାନ ଗ୍ରନ୍ଥ 'ଗ୍ରନ୍ଥସାହେବ'କୁ ସେମାନେ ପୂଜା

କରନ୍ତି । ତାଙ୍କର ପ୍ରଧାନ ତୀର୍ଥ ଅମୃତସର୍‌ରେ ଗୋଟିଏ ସ୍ୱର୍ଣ୍ଣ ମନ୍ଦିର ଅଛି । ନାନକ ପ୍ରଥମ ଶିଖଗୁରୁ । ଶିଖମାନେ ପ୍ରଥମେ ଶାନ୍ତିପ୍ରିୟ ଥିଲେ । ପରେ ମୋଗଲ୍‌ସମ୍ରାଟ୍‌ଙ୍କର ଅତ୍ୟାଚାରରେ ସେମାନେ ଗୋଟିଏ ସାମରିକ ଜାତିରେ ପରିଣତ ହୋଇଥିଲେ ।

ପଞ୍ଚମ ଶିଖଗୁରୁ ଅର୍ଜୁନଙ୍କୁ ଜାହାଙ୍ଗୀର ହତ୍ୟା କରିଥିବାରୁ ଶିଖମାନେ ଅସ୍ତ୍ର ଅସ୍ତ୍ର ଅସ୍ତ୍ରଶିକ୍ଷା କରିବାକୁ ଲାଗିଲେ । ନବମ ଶିଖ ଗୁରୁ



ତେଗ୍‌ବାହାଦୂର୍ ମୁସଲମାନ ନ ହେବାକୁ ହିନ୍ଦୁମାନଙ୍କୁ ଉପଦେଶ ଦେଉଥିବାରୁ ଅଉରଙ୍ଗଜେବ ଖ୍ରୀ: ୧୬୭୫ରେ ତାଙ୍କୁ ନିର୍ଦ୍ଦୟଭାବରେ ହତ୍ୟା କରିଥିଲେ । ମୋଗଲ୍ ସମ୍ରାଟ୍‌ଙ୍କ ବିରୁଦ୍ଧରେ ପ୍ରତିଶୋଧ ନେବା-ପାଇଁ ଦଶମ ଶିଖଗୁରୁ **ଗୁରୁ-ଗୋବିନ୍ଦ** ସେମାନଙ୍କୁ ଗୋଟିଏ ସାମରିକ ଜାତିରେ ପରିଣତ କରିଥିଲେ । ସେମାନେ ସିଂହ ଉପାଧି ଗ୍ରହଣ-କରି କୃପାଣ, କେଶ, କଙ୍କତିକା (ପାନିଆ), କାଛ ଓ କଙ୍କଣ ଧାରଣ କଲେ । ଜାତୀୟତାର ଚିହ୍ନସ୍ୱରୂପ ଶିଖମାନେ ବର୍ତ୍ତମାନ ସେଗୁଡ଼ିକ ଧାରଣ କରୁଅଛନ୍ତି । ଅଉରଙ୍ଗଜେବଙ୍କ ମୃତ୍ୟୁପର୍ଯ୍ୟନ୍ତ ସେମାନେ ତାଙ୍କ ସହିତ ଯୁଦ୍ଧ ଚଳାଇଥିଲେ । ଅଉରଙ୍ଗଜେବଙ୍କ ପୁଅ ସେମାନଙ୍କ ସହିତ ସନ୍ଧି କରିଥିଲେ । ମୃତ୍ୟୁରୁ ଗୁରୁ ଗୋବିନ୍ଦ ବାହାଦୁର ସାମରିକ ନେତା ମନୋନୀତ କରି ତାଙ୍କ ପରେ

ଅନ୍ତ କେହି ଶିଖଧର୍ମଗୁରୁ ହେବେ ନାହିଁ ବୋଲି ମନା କରିଥିଲେ । ଏହି ସମୟରେ ମୋଗଲ ସାମ୍ରାଜ୍ୟର ଅବସାନ ହେବାରୁ ଶିଖମାନେ ପଞ୍ଜାବରେ ଛୋଟ ଛୋଟ ରାଜ୍ୟ ସ୍ଥାପନ କଲେ । ପରେ ରଣଜିତ୍ ସିଂହ ସେମାନଙ୍କୁ ସଂଗଠନ କରି ଶିଖ ସାମ୍ରାଜ୍ୟ ସ୍ଥାପନ କରିଥିଲେ ।

---

# ତ୍ରିଂଶ ଅଧ୍ୟାୟ

## ହିନ୍ଦୁ ମୁସଲମାନ୍ ଧର୍ମ ଓ ସଂସ୍କୃତିର ମିଳନ

**ହିନ୍ଦୁ ମୁସଲମାନ୍ ସମ୍ପର୍କ** :—ଭାରତରେ ଇସଲାମ୍ ଧର୍ମ ପ୍ରଚାର କରିବା ମୁସଲମାନ୍‌ମାନଙ୍କ ମୁଖ୍ୟ ଉଦ୍ଦେଶ୍ୟ ଥିଲା । ପ୍ରଥମରୁ ଦିଲ୍ଲୀର ସୁଲତାନ୍‌ମାନେ ହିନ୍ଦୁମାନଙ୍କ ଉପରେ ଭୟଙ୍କର ଅତ୍ୟାଚାର କରି ବଳପୂର୍ବକ ସେମାନଙ୍କୁ ମୁସଲମାନ୍ କରିବାକୁ ପ୍ରାଣପଣେ କରୁଥିଲେ । ଶାସନକ୍ଷେତ୍ରରେ ମୁସଲମାନ୍‌ମାନେ ଉଚ୍ଚ ରାଜକାର୍ଯ୍ୟ ପାଇଲେ ଓ ସୁଦକ୍ଷ ହିନ୍ଦୁମାନେ ଅବହେଳିତ ହେଲେ । ହିନ୍ଦୁମାନଙ୍କର ଆର୍ଥିକ ଅବସ୍ଥା କ୍ରମେ ଖରାପ ହେଲା । ଏହିସବୁ କାରଣରୁ ଦେଶରେ ବିଦ୍ରୋହ ସୃଷ୍ଟିହେଲା । ଦିଲ୍ଲୀସୁଲତାନ୍ ଓ ଅନ୍ୟ ମୁସଲମାନ୍ ଶାସକମାନେ କ୍ରମେ ଦୁର୍ବଳ ହେଲେ । ବୁଦ୍ଧିମାନ୍ ମୁସଲମାନ୍ ଶାସକମାନେ ଦେଶରେ ଶାନ୍ତି ଶୃଙ୍ଖଳା ଆଣିବା ପାଇଁ ହିନ୍ଦୁମାନଙ୍କୁ ଉଚ୍ଚ ରାଜକାର୍ଯ୍ୟରେ ସ୍ଥାନ ଦେଲେ ଓ ସେମାନଙ୍କ ପ୍ରତି କ୍ରମେ ଉଦାର ହେଲେ । ହିନ୍ଦୁ ଶାସକମାନେ ମଧ୍ୟ ମୁସଲମାନ୍‌ମାନଙ୍କୁ ରାଜକାର୍ଯ୍ୟରେ ନିଯୁକ୍ତ କଲେ ।

ହିନ୍ଦୁ ଓ ମୁସଲମାନ୍‌ମାନେ ବହୁଦିନ ଏକ ଦେଶରେ ବାସ କରିବାରୁ ପରସ୍ପର ପରସ୍ପରର ଆଚାର ବ୍ୟବହାର ଓ ସଂସ୍କୃତି

ଅନୁସରଣ କଲେ ଓ ପରସ୍ପର ପ୍ରତି ଘୃଣା କମିଗଲା । ଉଭୟ ଜାତି ସତ୍ୟପୀରଙ୍କୁ ପୂଜା କଲେ ।

ହିନ୍ଦୁ ଓ ମୁସଲମାନ୍‌ମାନେ ପରସ୍ପରର ସାହିତ୍ୟ ଓ ଧର୍ମଗ୍ରନ୍ଥରୁ ଭାବ ଓ ଭାଷା ନେଇ ପରସ୍ପରର ସାହିତ୍ୟ ଓ ଧର୍ମଗ୍ରନ୍ଥରେ ସ୍ଥାନ ଦେଲେ । ହିନ୍ଦୁ ଧର୍ମଗ୍ରନ୍ଥମାନ ମୁସଲମାନ୍ ଭାଷାରେ ଅନୁବାଦିତ ହେଲା । ହିନ୍ଦୁ ଓ ମୁସଲମାନ୍‌ମାନଙ୍କର ଭାଷା ମିଶି ଉର୍ଦ୍ଦୁ ଭାଷାର ସୃଷ୍ଟି ହେଲା ।

**ଅମୀର ଖୁସ୍ରୁ** :—ସେ ଭାରତୀୟ ଭାବଧାରା ଓ ଧର୍ମମତକୁ ପାର୍ଶି ଗ୍ରନ୍ଥମାନଙ୍କରେ ସ୍ଥାନ ଦେଇଥିଲେ । ସେହି ଭାବଧାରା ଓ ଧର୍ମମତଦ୍ୱାରା ମୁସଲମାନ୍‌ମାନେ ପ୍ରଭାବିତ ହେଲେ ଓ ସେହି ଗ୍ରନ୍ଥଗୁଡ଼ିକ ଉଭୟ ଜାତି ମଧ୍ୟରେ ସଦ୍‌ଭାବ ଆଣିବାରେ ଯଥେଷ୍ଟ ସାହାଯ୍ୟ କରିଥିଲା । ହିନ୍ଦୁ ଓ ମୁସଲମାନ୍‌ମାନେ ପରସ୍ପରର ଶିଳ୍ପକଳା ଅନୁକରଣ କଲେ ।

ଇସଲାମ୍ ଧର୍ମରେ ସମସ୍ତେ ସମାନ ଥିଲେ । ନୀଚବର୍ଣ୍ଣର ହିନ୍ଦୁମାନେ ଧର୍ମ ବୁଝି ନଥିବାରୁ ଓ ସମାଜରେ ଆଦର ପାଉ ନଥିବାରୁ ଇସଲାମ୍ ଧର୍ମ ଗ୍ରହଣ କରୁଥିଲେ । ଏହି ସମୟରେ ହିନ୍ଦୁଧର୍ମକୁ ରକ୍ଷାକରିବା ପାଇଁ ରାମାନନ୍ଦ, କବୀର, ନାନକ, ଚୈତନ୍ୟ ଓ ଉତ୍କଳର ପଞ୍ଚସଖା ପ୍ରଭୃତି ସଂସ୍କାରକମାନେ ବାହାରିଲେ । ସେମାନେ ଇସଲାମ୍ ଧର୍ମନୀତି ଅନୁସରଣ-କରି ହିନ୍ଦୁଧର୍ମରୁ ଜାତିଭେଦ ଉଠାଇଦେଇ ସରଳ ମାତୃଭାଷାରେ ନିଜ ନିଜର ଧର୍ମ ପ୍ରଚାର କଲେ ।

**ରାମାନନ୍ଦ** :—ସେ କାଶୀକୁ ପ୍ରଧାନ ଧର୍ମପୀଠ କରି ଉତ୍ତର-ଭାରତରେ ହିନ୍ଦି ଭାଷାରେ ବୈଷ୍ଣବଧର୍ମ ପ୍ରଚାର କରିଥିଲେ । ତାଙ୍କ ଧର୍ମରେ ଜାତିଭେଦ ନଥିବାରୁ ତାଙ୍କର ଶିଷ୍ୟମାନେ ଏକତ୍ର ଭୋଜନ କରୁଥିଲେ । ସେ 'ଭକ୍ତମାଳା' ନାମରେ ଗୋଟିଏ ବୈଷ୍ଣବ ଗ୍ରନ୍ଥ ଲେଖିଥିଲେ । ସେଥିରେ ବହୁତ ବୈଷ୍ଣବ ଗୁରୁଙ୍କର ଜୀବନଚରିତ ବର୍ଣ୍ଣିତ ହୋଇଅଛି ।

**କବୀର** :—ସେ ଜାତିରେ ମୁସଲମାନ୍ ତନ୍ତ୍ରୀ ଥିଲେ । ସେ ରାମାନନ୍ଦଙ୍କର ଶିଷ୍ୟ । ହିନ୍ଦୁ ଓ ମୁସଲମାନ୍ ଉଭୟଙ୍କୁ ସେ ଶିଷ୍ୟରୂପେ ଗ୍ରହଣ କରୁଥିଲେ । ସେ କହୁଥିଲେ "ରାମ ଓ ଅଲ୍ଲାଙ୍କ ମଧ୍ୟରେ ପ୍ରଭେଦ ନାହିଁ । ତେଣୁ ହିନ୍ଦୁ ଓ ମୁସଲମାନ୍‌ମାନେ କଳହ କରିବା ଉଚିତ ନୁହେଁ" । ସେ ହିନ୍ଦିଭାଷାରେ ଅନେକଗୁଡ଼ିଏ ନୀତିପୂର୍ଣ୍ଣ କବିତା ଲେଖିଥିଲେ ।

**ନାନକ** :—ସେ ଖ୍ରୀ: ୧୪୬୯ରେ ପଞ୍ଜାବରେ ଜନ୍ମ ହୋଇଥିଲେ । ସେ ଶିଖଧର୍ମ ପ୍ରଚାର କରିଥିଲେ । ହିନ୍ଦୁ ମୁସଲମାନ୍ ଉଭୟେ ତାଙ୍କ ଧର୍ମ ଗ୍ରହଣ କରୁଥିଲେ କାରଣ ତାଙ୍କ ଧର୍ମରେ ଜାତିଭେଦ ନ ଥିଲା । ସେ ପବିତ୍ର



ଜୀବନ ଯାପନ କରିବାକୁ ଉପଦେଶ ଦେଉଥିଲେ । ତାଙ୍କ ମତରେ ସବୁ-ଧର୍ମର ଈଶ୍ୱର ସମାନ । ତେଣୁ ଧର୍ମ ପାଇଁ ବିବାଦ ନ କରିବାକୁ ସେ ଲୋକଙ୍କୁ ଉପଦେଶ ଦେଉଥିଲେ ।

**ଚୈତନ୍ୟ ଓ ପଞ୍ଚସଖା** :—ଚୈତନ୍ୟ ବଙ୍ଗଳା ଓ ଓଡ଼ିଶାରେ ବୈଷ୍ଣବଧର୍ମ ପ୍ରଚାର କରିଥିଲେ । ଓଡ଼ିଶାର ରାଜା ପ୍ରତାପରୁଦ୍ର ଓ ତାଙ୍କର ପାତ୍ରମନ୍ତ୍ରୀମାନେ ଏହି ଧର୍ମରେ ଦୀକ୍ଷିତ ହୋଇଥିଲେ । ଓଡ଼ିଶାରେ ତାଙ୍କର ପାଞ୍ଚଜଣ ବଡ଼ଶିଷ୍ୟ ଥିଲେ । ସେମାନଙ୍କୁ 'ପଞ୍ଚସଖା' ବୋଲଯାଏ । ଚୈତନ୍ୟ ଓ ପଞ୍ଚସଖାଙ୍କ ଦ୍ୱାରା ଓଡ଼ିଶାରେ ବୈଷ୍ଣବ-ଧର୍ମ ବିଶେଷଭାବରେ ପ୍ରଚାରିତ ହୋଇଥିଲା । ପଞ୍ଚସଖାଙ୍କ ସାହାଯ୍ୟରେ ଓଡ଼ିଆଭାଷାର ବହୁତ ଉନ୍ନତି ହୋଇଥିଲା ।



ଏହି ଧର୍ମପ୍ରଚାରକମାନଙ୍କ ଯୋଗୁଁ ହିନ୍ଦୁ ଓ ମୁସଲମାନ୍‌ମାନେ ଉଦାର ଓ ସହିଷ୍ଣୁ ହୋଇ ପରସ୍ପର ମଧ୍ୟରେ ସଦ୍‌ଭାବ ପ୍ରତିଷ୍ଠା କରିଥିଲେ । ପରସ୍ପର ପରସ୍ପରର ଯାତ୍ରା ଓ ପର୍ବ-ମାନଙ୍କରେ ଯୋଗଦେଲେ । ଉଦାର ମୋଗଲ ସମ୍ରାଟ୍‌ମାନଙ୍କ ଅମଳରେ ହିନ୍ଦୁ ଓ ମୁସଲମାନ୍‌ମାନଙ୍କ ମଧ୍ୟରେ ସଦ୍‌ଭାବ ବେଶୀ ବଢ଼ିଯାଇଥିଲା ।

ଲୋକମାନଙ୍କୁ ସରଳଭାଷାରେ ଧର୍ମତତ୍ତ୍ୱ ବୁଝାଇବାପାଇଁ ଏହି ଧର୍ମ-ପ୍ରଚାରକମାନେ ଏବଂ ବହୁତ କବି ଓ ସାହିତ୍ୟିକମାନେ ସ୍ୱ ସ୍ୱ ମାତୃଭାଷାରେ ବହୁତ ବହି ଲେଖିଥିଲେ । ଫଳରେ ପ୍ରାଦେଶିକ ସାହିତ୍ୟଗୁଡ଼ିକର ବହୁତ ଉନ୍ନତି ହୋଇଥିଲା । ରାମାନନ୍ଦ ଓ କବୀରଙ୍କଦ୍ୱାରା ହିନ୍ଦି ସାହିତ୍ୟର

ଚୈତନ୍ୟ, ବିଦ୍ୟାପତି, ଚଣ୍ଡୀଦାସ ପ୍ରଭୃତିଙ୍କ ଦ୍ୱାରା ବଙ୍ଗ ସାହିତ୍ୟର ଏବଂ ଜଗନ୍ନାଥ ଦାସ, ସାରଳା ଦାସ ଓ ବଳରାମ ଦାସ ପ୍ରଭୃତିଙ୍କ ଦ୍ୱାରା ଓଡ଼ିଆ ସାହିତ୍ୟର ବିଶେଷ ଉନ୍ନତି ହୋଇଥିଲା ।

## ଅନୁଶୀଳନୀ

୧ । ନିମ୍ନଲିଖିତ ବନ୍ଧନୀ ମଧ୍ୟରୁ ଉପଯୁକ୍ତ ଖ୍ରୀଷ୍ଟାବ୍ଦ ବାଛି ଶୂନ୍ୟସ୍ଥାନମାନ ପୂରଣ କର ଓ ପୂର୍ଣ୍ଣବାକ୍ୟଗୁଡ଼ିକ କାଳର କ୍ରମ ଅନୁସାରେ ସଜାଇ ରଖ :—

(କ) ଶିବାଜୀ — ରେ ରାୟଗଡ଼ଠାରେ ସିଂହାସନରେ ବସିଥିଲେ ।

(ଖ) ପାରସ୍ୟର ସମ୍ରାଟ୍ ନାଦୀରସାହ — ରେ ଭାରତ ଆକ୍ରମଣ କରିଥିଲେ ।

(ଗ) ରାଣା ସଙ୍ଗ — ରେ ଖାନୁଆଯୁଦ୍ଧରେ ବାବରଙ୍କ ଦ୍ୱାରା ପରାସ୍ତ ହୋଇଥିଲେ ।

(ଘ) ରାଣା ପ୍ରତାପ — ରେ ହଳଦୀଘାଟ ଯୁଦ୍ଧରେ ପରାସ୍ତ ହୋଇଥିଲେ ।

(ଙ) ମରହଟ୍ଟାମାନେ — ରେ ତୃତୀୟ ପାଣିପଥ ଯୁଦ୍ଧରେ ପରାସ୍ତ ହୋଇଥିଲେ ।

(ଚ) ଚୈତନ୍ୟଦେବ — ରେ ପୁରୀରେ ଦେହତ୍ୟାଗ କରିଥିଲେ ।

(ଖ୍ରୀ: ୧୫୩୩, ଖ୍ରୀ: ୧୬୭୪, ଖ୍ରୀ: ୧୭୩୯, ଖ୍ରୀ: ୧୫୭୬, ଖ୍ରୀ: ୧୭୬୧, ଖ୍ରୀ: ୧୫୨୭ )

୨ । 'କ' ସ୍ତମ୍ଭରୁ ଗୋଟିଏ ଶବ୍ଦ ନେଇ 'ଖ' ସ୍ତମ୍ଭର ଉପଯୁକ୍ତ ଶବ୍ଦ ସହିତ ଯୋଗକରି ଗୋଟିଏ ଲେଖାଏଁ ବାକ୍ୟ ରଚନା କର :—

| 'କ' ସ୍ତମ୍ଭ | 'ଖ' ସ୍ତମ୍ଭ |
|---|---|
| ତୋଡ଼ରମଲ୍ଲ | ଶିବାଜୀ |
| ଓଡ଼ିଆ ଭାଗବତ | ରାମଦାସ |

| | |
|---|---|
| କଳାପାହାଡ଼ | କପିଳେନ୍ଦ୍ର ଦେବ |
| କୋଣାର୍କେଶ୍ୱର | ଜଗନ୍ନାଥ ଦାସ |
| ତାଜମହଲ | ଜଗନ୍ନାଥ ମୂର୍ତ୍ତି |
| ବାବର | ଅକବର |
| ଅଫଜଲ ଖାଁ | ସାହାଜାହାନ |

୩ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ :—

(କ) ଗୁରୁ ଗୋବିନ୍ଦ ସିଂହ କିଏ ?

(ଖ) ପ୍ରତାପରୁଦ୍ର ଦେବଙ୍କ ଉପରେ ଚୈତନ୍ୟଙ୍କର କି ପ୍ରଭାବ ପଡ଼ିଥିଲା ?

(ଗ) ଓଡ଼ିଶାର ଶେଷ ହିନ୍ଦୁରାଜା କିଏ ?

---

# ଏକବିଂଶ ଅଧ୍ୟାୟ

## ଇଉରୋପୀୟମାନଙ୍କର ଭାରତ ଆଗମନ

ଅତି ପ୍ରାଚୀନକାଳରୁ ଭାରତ ଓ ଇଉରୋପ ମଧ୍ୟରେ ବାଣିଜ୍ୟ ଚାଲି ଆସୁଥିଲା । ନାନା ଜାତିର ମସଲା, ହୀରା, ମଣି, ମୁକ୍ତା, ରଙ୍ଗ, ସୁନା, ରୁପା ଓ ହାତୀ ଦାନ୍ତର କାରୁକାର୍ଯ୍ୟପୂର୍ଣ୍ଣ ଜିନିଷ ଓ ଅଳଙ୍କାର ଓ ସୁନ୍ଦର ସୁନ୍ଦର ଲୁଗା ଇଉରୋପରେ ବହୁମୂଲ୍ୟରେ ବିକ୍ରୀ ହେଉଥିଲା । ଆରବର ବଣିକମାନେ କନ୍‌ଷ୍ଟାଣ୍ଟିନୋପଲ (ଇସ୍ତାମ୍ବୁଲ) ବାଟଦେଇ ଏସବୁ ଜିନିଷ ନେଇ ଇଟାଲୀର ଜେନୋଆ ଓ ଭେନିସ୍ ପ୍ରଭୃତି ସହରର ବଣିକମାନଙ୍କୁ ବିକୁଥିଲେ । ସେମାନେ ସେ ଜିନିଷଗୁଡ଼ିକୁ ବହୁଦାମ୍‌ରେ ପଶ୍ଚିମ ଇଉରୋପରେ ବିକୁଥିଲେ । କନ୍‌ଷ୍ଟାଣ୍ଟିନୋପଲ ତୁରସ୍କର ମୁସଲମାନ୍‌ମାନଙ୍କ ଅଧୀନରେ ପଡ଼ିଲା । ସେମାନଙ୍କ ଅତ୍ୟାଚାର ହେତୁ ସ୍ଥଳପଥରେ ବାଣିଜ୍ୟ ନିରାପଦରେ ଚାଲିପାରିଲା ନାହିଁ । ପଶ୍ଚିମ ଇଉରୋପର ବଣିକମାନେ ପ୍ରତ୍ୟକ୍ଷ ଭାବରେ ଭାରତ ସଙ୍ଗେ ବାଣିଜ୍ୟ କରିବାପାଇଁ ଇଚ୍ଛାକଲେ ।

ଇଉରୋପୀୟ ନାବିକମାନେ ଜଳପଥରେ ଭାରତ ଆବିଷ୍କାର କରିବାକୁ ଚାହାଁଲେ । କଲମ୍ବସ୍ ଭାରତ ଆବିଷ୍କାର କରିବାକୁ ଆସି ଆମେରିକା ଆବିଷ୍କାର କଲେ ।

**ପର୍ତ୍ତୁଗୀଜମାନଙ୍କର ଆଗମନ** :—ପର୍ତ୍ତୁଗାଲର ବିଖ୍ୟାତ ନାବିକ **ଭାସ୍କୋଡ଼ାଗାମା** ଉତ୍ତମାଶାନ୍ତରୀପ ବାଟେ ଆଫ୍ରିକାକୁ ବୁଲି ଖ୍ରୀ: ୧୪୯୮ ରେ ଭାରତର ପଶ୍ଚିମ ଉପକୂଳରେ ଥିବା କାଲିକଟ୍ ବନ୍ଦରରେ ପହଞ୍ଚିଲେ । ସେତେବେଳେ ଦିଲ୍ଲୀରେ ଲୋଦିବଂଶର ରାଜାମାନେ ଓ ଓଡ଼ିଶାରେ ପ୍ରତାପରୁଦ୍ର ଦେବ ରାଜପଣ କରୁଥିଲେ । କାଲିକଟ୍‌ର ରାଜା ଜାମୋରିନ୍‌ଙ୍କ ସାହାଯ୍ୟରେ ପର୍ତ୍ତୁଗୀଜମାନେ ଭାରତରେ ବାଣିଜ୍ୟ କରିବାକୁ ସୁବିଧା ପାଇଲେ । ସେମାନେ ଅନେକଗୁଡ଼ିଏ ବାଣିଜ୍ୟକୋଠି ନିର୍ମାଣ କରି ବାଣିଜ୍ୟ କରିବା ସଙ୍ଗେ ସଙ୍ଗେ ଦାସ ବ୍ୟବସାୟ ଚଳାଇ ଖ୍ରୀଷ୍ଟଧର୍ମ ପ୍ରଚାର କରିବାରୁ ବଡ଼ ଅପ୍ରିୟ ହେଲେ ଓ ଭାରତରୁ ତଡ଼ା ଖାଇଲେ । ଗୋଆ, ଡାମନ୍, ଡିଉ ଛଡ଼ା ଭାରତରେ ତାଙ୍କର ଆଉ କୌଣସି ସ୍ଥାନ ନାହିଁ ।

**ଇଂରେଜମାନଙ୍କର ଆଗମନ** :—ପର୍ତ୍ତୁଗୀଜମାନଙ୍କ ପରେ ଇଂରେଜମାନେ ଭାରତକୁ ବାଣିଜ୍ୟ କରିବାକୁ ଆସିଥିଲେ । ଖ୍ରୀ: ୧୬୦୦ରେ ଗୋଟିଏ ବଣିକଦଳ ଇଷ୍ଟ ଇଣ୍ଡିଆ କମ୍ପାନୀ ଗଠନ କରି ଇଂଲଣ୍ଡର ରାଣୀ ଏଲିଜାବେଥ୍‌ଙ୍କଠାରୁ ଭାରତରେ ବାଣିଜ୍ୟ କରିବାକୁ ଅନୁମତି ପାଇଲେ । ସେମାନେ ଆକବରଙ୍କ ରାଜତ୍ୱ ସମୟରେ ଭାରତକୁ ଆସି ଜାହାଙ୍ଗୀରଙ୍କ ରାଜତ୍ୱ ସମୟରେ ବାଣିଜ୍ୟ ପାଇଁ କେତେକ ସୁବିଧା ପାଇଥିଲେ । ଇଂରେଜମାନେ ମସୁଲିପଟ୍ଟମ୍, ମୁର୍ଶିଦାବାଦ, ଢାକା, ହୁଗୁଳି, ପାଟଣା, ଓଡ଼ିଶାର ପିପିଲି ଓ ବାଲେଶ୍ୱର ପ୍ରଭୃତି ସ୍ଥାନମାନଙ୍କରେ ବାଣିଜ୍ୟ କୋଠିମାନ ସ୍ଥାପନ କଲେ । ଖ୍ରୀ: ୧୬୪୦ରେ ଇଂରେଜମାନେ ଚନ୍ଦ୍ରଗିରିର

ରାଜାଙ୍କଠାରୁ କିଛି ଜମି କିଣି ସେଠାରେ ସେଣ୍ଟ ଜର୍ଜ ଦୁର୍ଗ ଓ ମାନ୍ଦ୍ରାଜ୍ ନଗର ସ୍ଥାପନ କରିଥିଲେ । ଇଂଲଣ୍ଡର ରାଜା ଦ୍ୱିତୀୟ ଚାର୍ଲସ୍ ପର୍ତ୍ତୁଗୀଜ ରାଜାଙ୍କଠାରୁ ଯୌତୁକ ପାଇଥିବା ବମ୍ବେ ଦ୍ୱୀପଟି ଖ୍ରୀ: ୧୬୬୮ ରେ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ପଟ୍ଟା ଦେଇଥିଲେ । କାଳକ୍ରମେ ସେଠାରେ ବମ୍ବେ ସହର ବଢ଼ିବାକୁ ଲାଗିଲା । ଖ୍ରୀ:୧୬୯୦ରେ କମ୍ପାନୀ ସୁତାନଟୀ କାଲିକଟା ଓ ଗୋବିନ୍ଦପୁର ଗ୍ରାମମାନ କିଣି ସେଠାରେ ଫୋର୍ଟ ଉଇଲିଅମ୍ ଦୁର୍ଗ ଓ କଲିକତା ନଗର ସ୍ଥାପନ କରିଥିଲେ । ସେଗୁଡ଼ିକ ଇଂରେଜ-ମାନଙ୍କର ପ୍ରଧାନ ବାଣିଜ୍ୟକେନ୍ଦ୍ର ହୋଇଥିଲା ।

**ଅନ୍ୟାନ୍ୟ ଜାତି** :—ହଲଣ୍ଡର ଅଧିବାସୀ ଓଲନ୍ଦାଜମାନେ ଭାରତକୁ ବାଣିଜ୍ୟ କରିବାକୁ ଆସିଥିଲେ । ସେମାନେ ଇଂରେଜ ଓ ଫରାସୀ ମାନଙ୍କଦ୍ୱାରା ଭାରତରୁ ତଡ଼ାଖାଇ ପୂର୍ବଭାରତୀୟ ଦ୍ୱୀପପୁଞ୍ଜରେ ବାଣିଜ୍ୟ କଲେ । ଡେନ୍‌ମାର୍କ ଅଧିବାସୀ ଦିନାମାରମାନେ ମଧ୍ୟ ଭାରତକୁ ବାଣିଜ୍ୟ କରିବାକୁ ଆସିଥିଲେ । ସେମାନେ ଇଂରେଜମାନଙ୍କୁ ସେମାନଙ୍କର ବାଣିଜ୍ୟ କୋଠିଗୁଡ଼ିକ ବିକିଦେଇ ଭାରତରୁ ଚାଲିଗଲେ ।

**ଫରାସୀମାନଙ୍କର ଆଗମନ** :—ଫରାସୀମାନେ ଖ୍ରୀ: ୧୬୬୪ରେ ଭାରତରେ ବାଣିଜ୍ୟ କରିବାକୁ ଆସି ପଣ୍ଡିଚେରୀ, ଚନ୍ଦନ ନଗର, ମାହି ଓ କାରିକୋଲ୍ ପ୍ରଭୃତି ସ୍ଥାନରେ ବାଣିଜ୍ୟ କୋଠି ନିର୍ମାଣ କରିଥିଲେ । ବାଣିଜ୍ୟ ପାଇଁ ବିଭିନ୍ନ ଇଉରୋପୀୟ ଜାତିମାନଙ୍କ ମଧ୍ୟରେ ବିବାଦ ଲାଗିଥିଲା । ଶେଷକୁ କେବଳ ଇଂରେଜ ଓ ଫରାସୀମାନେ ଭାରତରେ ରହିଗଲେ । ବାଣିଜ୍ୟ ଓ ରାଜ୍ୟ ସ୍ଥାପନ ପାଇଁ ସେମାନଙ୍କ ମଧ୍ୟରେ ଯୁଦ୍ଧ ହୋଇ ଶେଷରେ ଇଂରେଜମାନେ ଜୟଲାଭ କରି ଭାରତରେ ବାଣିଜ୍ୟ ଓ କ୍ଷମତା ବିସ୍ତାର ପାଇଁ ସୁବିଧା ପାଇଥିଲେ । ଫରାସୀମାନେ ପରାସ୍ତ ହେଲେ ମଧ୍ୟ ମାହି, ପଣ୍ଡିଚେରୀ ଓ ଚନ୍ଦନନଗର ପ୍ରଭୃତି ସ୍ଥାନ ତାଙ୍କ ଅଧୀନରେ ରହିଥିଲା ।

# ଦ୍ୱାତ୍ରିଂଶ ଅଧ୍ୟାୟ

## ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ ବିବାଦ

କର୍ଣ୍ଣାଟ ପ୍ରଦେଶରେ ଇଂରେଜ ଉପନିବେଶ ମାନ୍ଦ୍ରାଜ ଓ ଫରାସୀ ଉପନିବେଶ ପଣ୍ଡିଚେରୀ ଅବସ୍ଥିତ ଥିଲା । ଡ୍ୟୁପ୍ଲେ ନାମରେ ଜଣେ ସୁଦକ୍ଷ ଲୋକ ପଣ୍ଡିଚେରୀର ଫରାସୀ ଶାସନକର୍ତ୍ତା ହୋଇ ଆସିଥିଲେ । ସେ ଭାରତରୁ ଇଂରେଜମାନଙ୍କୁ ତଡ଼ି ଭାରତରେ ଫରାସୀ ରାଜ୍ୟ ସ୍ଥାପନ ଓ ଫରାସୀ ବାଣିଜ୍ୟ ବିସ୍ତାର କରିବାପାଇଁ ଆଶା କରିଥିଲେ । ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ ଇଉରୋପରେ ଯୁଦ୍ଧ ଲାଗିବାରୁ ଡ୍ୟୁପ୍ଲେ ଖ୍ରୀ: ୧୭୪୬ ରେ ମାନ୍ଦ୍ରାଜ ଅଧିକାର କଲେ । ମାନ୍ଦ୍ରାଜ କର୍ଣ୍ଣାଟର ନବାବ ଅନ୍‌ଓଆରଉଦ୍ଦିନ୍‌ଙ୍କ ରାଜ୍ୟରେ ଥିବାରୁ ସେ ଡ୍ୟୁପ୍ଲେଙ୍କୁ ଶାସ୍ତି ଦେବାପାଇଁ ଦଶହଜାର ସୈନ୍ୟ ପଠାଇଲେ । ପାଞ୍ଚଶହ ସୁଶିକ୍ଷିତ ଫରାସୀ ସୈନ୍ୟ ସେମାନଙ୍କୁ ପରାସ୍ତ କରିଥିଲେ । ଏହାକୁ **ପ୍ରଥମ କର୍ଣ୍ଣାଟ ସମର** କହନ୍ତି । ଖ୍ରୀ: ୧୭୪୮ ରେ ଇଂରେଜ ଓ ଫରାସୀମାନଙ୍କର ଇଉରୋପରେ ସନ୍ଧି ହେବାରୁ ଫରାସୀମାନେ ବାଧ୍ୟହୋଇ ମାନ୍ଦ୍ରାଜକୁ ଇଂରେଜମାନଙ୍କୁ ଫେରାଇଦେଲେ ।

**ଦ୍ୱିତୀୟ କର୍ଣ୍ଣାଟ ସମର** :—ହାଇଦ୍ରାବାଦର ଶାସକ ନିଜାମ ଉଲ୍‌ମୁଲକ ଖ୍ରୀ: ୧୭୪୮ ରେ ପ୍ରାଣତ୍ୟାଗ କରିବାରୁ ତାଙ୍କର ଦ୍ୱିତୀୟ ପୁତ୍ର ନାଜିରଜଙ୍ଗ ଓ ନାତି ମୁଜାଫରଜଙ୍ଗ ସିଂହାସନ ପାଇଁ ଦାବୀକଲେ । ଚନ୍ଦାସାହେବ କର୍ଣ୍ଣାଟର ନବାବ ହେବାପାଇଁ ଚେଷ୍ଟା କରୁଥିଲେ । ମୁଜାଫରଜଙ୍ଗ ଓ ଚନ୍ଦାସାହେବ ଡ୍ୟୁପ୍ଲେଙ୍କ ସାହାଯ୍ୟରେ କର୍ଣ୍ଣାଟର ନବାବ ଅନ୍‌ଓଆରଉଦ୍ଦିନ୍‌ଙ୍କୁ ଯୁଦ୍ଧରେ ହତ୍ୟାକଲେ । ଚନ୍ଦାସାହେବ କର୍ଣ୍ଣାଟର

ନବାବ ହେଲେ ଓ ଅନ୍‌ୱାରୁଦ୍ଦିନ୍‌ଙ୍କ ପୁଅ ମହମ୍ମଦ ଅଲି ତ୍ରିଚନାପଲ୍ଲୀରେ ଆଶ୍ରୟ ନେଲେ ।

ନାଜିରଜଙ୍ଗ ଇଂରେଜମାନଙ୍କ ସାହାଯ୍ୟରେ ମୁଜାଫରଙ୍କୁ ପରାସ୍ତ ଓ ବନ୍ଦୀକରି ହାଇଦ୍ରାବାଦର ନିଜାମ ହେଲେ । ନାଜିରଜଙ୍ଗ ଅଳ୍ପଦିନରେ ମରିଯିବାରୁ ଫରାସୀମାନେ ମୁଜଫରଙ୍କୁ ବନ୍ଦୀଶାଳାରୁ ମୁକ୍ତକରି ହାଇଦ୍ରାବାଦର ନିଜାମ କଲେ । ମୁଜାଫର ଅଳ୍ପଦିନ ପରେ ଯୁଦ୍ଧରେ ନିହତ ହେବାରୁ ଫରାସୀମାନେ ନିଜାମ ଉଲ୍‌ମୁଲ୍‌କଙ୍କର ଆଉ ଜଣେ ପୁତ୍ର ସାଲବତ୍ ଜଙ୍ଗଙ୍କୁ ହାଇଦ୍ରାବାଦର ନିଜାମ କଲେ । ଦାକ୍ଷିଣାତ୍ୟରେ ଫରାସୀମାନଙ୍କର କ୍ଷମତା ବଢ଼ିଲା ।

ମହମ୍ମଦ ଅଲିଙ୍କୁ ଇଂରେଜମାନେ ସାହାଯ୍ୟ ଦେଉଥିଲେ । ସେ ତ୍ରିଚନାପଲ୍ଲୀରେ ଆଶ୍ରୟ ନେଇଥିଲାବେଳେ ଚନ୍ଦାସାହେବ ତ୍ରିଚନାପଲ୍ଲୀ ଅବରୋଧ କଲେ । ଇଂରେଜମାନେ ବଡ଼ ବିପଦରେ ପଡ଼ିଲେ । ଏହି ସମୟରେ କ୍ଲାଇଭ୍ ନାମରେ ଜଣେ ଚତୁର ଇଂରେଜ କର୍ମଚାରୀ ଇଂରେଜ-ମାନଙ୍କର ସମ୍ମାନ ରକ୍ଷାକଲେ । ତ୍ରିଚନାପଲ୍ଲୀରେ ଚନ୍ଦାସାହେବଙ୍କୁ ପରାସ୍ତ କରିବା ସହଜ ନୁହେଁ ଜାଣି, ସେ ଅଳ୍ପ ସୈନ୍ୟ ନେଇ, ଚନ୍ଦାସାହେବଙ୍କ ରାଜଧାନୀ ଆର୍କଟ ଅବରୋଧ କଲେ । ଚନ୍ଦାସାହେବ ରାଜଧାନୀ ଅର୍କଟ୍ ଉଦ୍ଧାର କରିବା ପାଇଁ ନିଜ ସୈନ୍ୟରୁ ଅଧେ ପଠାଇଥିଲେ ମଧ୍ୟ କ୍ଲାଇଭ୍ ୫୩ ଦିନକାଳ ବୀରତ୍ୱର ସହିତ ଦୁର୍ଗ ରକ୍ଷାକଲେ । ପରେ ଆଉ ଅଧିକ ଇଂରେଜସୈନ୍ୟ ଆସି ପହଞ୍ଚିବାରୁ କ୍ଲାଇଭ୍ ଜୟଲାଭ କଲେ ଓ ତ୍ରିଚନାପଲ୍ଲୀକୁ ଯାଇ ଚନ୍ଦାସାହେବଙ୍କୁ ପରାସ୍ତ କଲେ । ଏହି ସମୟରେ ଡୁପ୍ଲେଙ୍କୁ ଫରାସୀ ସରକାର ଭାରତରୁ ଫ୍ରାନ୍‌ସ୍‌କୁ ଡକାଇ ନେଇଥିଲେ । ତାଙ୍କର ପରବର୍ତ୍ତୀ ଶାସକ ଇଂରେଜମାନଙ୍କ ସହିତ ସନ୍ଧିକଲେ । ମହମ୍ମଦ ଅଲି କର୍ଣ୍ଣାଟ୍‌ର ନବାବ ହେଲେ, ଇଂରେଜମାନଙ୍କର କ୍ଷମତା ବଢ଼ିଲା ଓ

ଫରାସୀମାନଙ୍କର ରାଜ୍ୟସ୍ଥାପନର ଆଶା ଲୋପ ପାଇଲା । ଦ୍ୱିତୀୟ କର୍ଣ୍ଣାଟ୍ ସମର ପରେ କର୍ଣ୍ଣାଟ୍‌ରେ ଇଂରେଜ କ୍ଷମତା ବଢ଼ିଥିଲେ ମଧ୍ୟ ହାଇଦ୍ରାବାଦରେ ଫରାସୀମାନଙ୍କର କ୍ଷମତା ପୂର୍ବପରି ରହିଥିଲା ।

**ତୃତୀୟ କର୍ଣ୍ଣାଟ୍ ସମର** :— ଖ୍ରୀଃ ୧୭୫୬ରେ ଇଉରୋପରେ ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ ଯୁଦ୍ଧ ଲାଗିବାରୁ ଭାରତରେ ପରସ୍ପରଙ୍କ ମଧ୍ୟରେ ଯୁଦ୍ଧ ଲାଗିଲା । କ୍ଲାଇବ୍ ଫରାସୀମାନଙ୍କର ଚନ୍ଦନନଗର ଅଧିକାର କଲେ । ଖ୍ରୀଃ ୧୭୫୮ରେ ଫରାସୀ ଶାସନକର୍ତ୍ତା ଲାଲି ମାନ୍ଦ୍ରାଜ ଅବରୋଧ କଲେ । ବିଲାତରୁ କେତେକ ଯୁଦ୍ଧଜାହାଜ ଆସି ପହଞ୍ଚିବାରୁ ଲାଲି ମାନ୍ଦ୍ରାଜ ଅବରୋଧ ତ୍ୟାଗକଲେ । ଖ୍ରୀଃ ୧୭୬୦ରେ ଇଂରେଜ ସେନାପତି କର୍ଣ୍ଣେଲ୍ ଏଆରକୁଟ୍ ଉଆଣ୍ଡିଉଆସ୍ ଯୁଦ୍ଧରେ ଫରାସୀମାନଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ କରି ଖ୍ରୀଃ ୧୭୬୧ରେ ଫରାସୀ ଉପନିବେଶ ପଣ୍ଡିଚେରୀ ଦଖଲ କଲେ । ଖ୍ରୀଃ ୧୭୬୩ରେ ଇଉରୋପରେ ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ ସନ୍ଧି ହେବାରୁ ଫରାସୀମାନେ ପଣ୍ଡିଚେରୀ ଓ ଅନ୍ୟ ଉପନିବେଶମାନ ଫେରି ପାଇଥିଲେ । କିନ୍ତୁ ଭାରତରେ ରାଜ୍ୟ ସ୍ଥାପନ କରିବାର ଆଶା ସେମାନଙ୍କର ସମ୍ପୂର୍ଣ୍ଣରୂପେ ଲୋପ ପାଇଲା ।

ଖ୍ରୀଃ ୧୭୬୧ ରେ ତୃତୀୟ ପାନିପଥ ଯୁଦ୍ଧରେ ମରହଟ୍ଟାଶକ୍ତି ଚୂର୍ଣ୍ଣୀଭୂତ ହୋଇଥିଲା । ସେହିବର୍ଷ ଭାରତରେ ଫରାସୀଶକ୍ତି ଲୋପ ପାଇବାରୁ ରାଜ୍ୟ ବିସ୍ତାର କରିବାପାଇଁ ଇଂରେଜମାନଙ୍କୁ ବଡ଼ ସୁଯୋଗ ମିଳିଲା ।

---

# ତ୍ରୟୋତ୍ରିଂଶ ଅଧ୍ୟାୟ

## ବଙ୍ଗଳାରେ ଇଂରେଜମାନଙ୍କର ଶକ୍ତି ପ୍ରତିଷ୍ଠା ଓ କ୍ଲାଇବ୍

ଦିଲ୍ଲୀ ସମ୍ରାଟ୍ ଦୁର୍ବଳ ଥିବାରୁ ବଙ୍ଗର ନବାବ ଅଲ୍‌ବର୍ଦ୍ଦିଖାଁ ଖ୍ରୀ: ୧୭୪୦ରେ ସ୍ୱାଧୀନ ହେଲେ। ତାଙ୍କ ପରେ ତାଙ୍କ ନାତି ସିରାଜଉଦ୍ଦୌଲ୍ଲା ଖ୍ରୀ: ୧୭୫୬ ରେ ବଙ୍ଗର ନବାବ ହେଲେ। ସେ ଉଦ୍ଧତ ଥିବାରୁ ଇଂରେଜମାନଙ୍କ ସହିତ ତାଙ୍କର ବିବାଦ ହୋଇଥିଲା। ବଙ୍ଗ ନବାବଙ୍କର ଜଣେ ଅପରାଧୀ ପଳାତକ କଲିକତାରେ ଇଂରେଜମାନଙ୍କର ଆଶ୍ରୟ ନେଇଥିଲେ। ସିରାଜଉଦ୍ଦୌଲ୍ଲା ସେହି ଅପରାଧୀଙ୍କୁ ଫେରାଇ ଦେବାକୁ ଇଂରେଜମାନଙ୍କଠାରେ ଦାବି କଲେ ମଧ୍ୟ ଇଂରେଜମାନେ ତାଙ୍କୁ ନବାବଙ୍କ ହାତରେ ସମର୍ପଣ କଲେ ନାହିଁ। ଏହି ସମୟରେ ଯୁଦ୍ଧ ଆଶଙ୍କାକରି ଇଂରେଜ ଓ ଫରାସୀମାନେ ନିଜ ନିଜ ଦୁର୍ଗ ସୁଦୃଢ଼ କରୁଥିଲେ। ଏପରି ବେଆଇନ କାର୍ଯ୍ୟ କରିବାକୁ ଉଭୟ ଜାତିକୁ ନବାବ ମନା କରିଥିଲେ। ଫରାସୀମାନେ ତାହା ମାନିଲେ କିନ୍ତୁ ଇଂରେଜମାନେ ମାନିଲେ ନାହିଁ। ବିନା ଶୁଳ୍କରେ ବାଣିଜ୍ୟ କରିବାକୁ କମ୍ପାନୀ ସୁବିଧା ପାଇଥିଲେ କିନ୍ତୁ କମ୍ପାନୀର କର୍ମଚାରୀମାନେ ବିନା ଶୁଳ୍କରେ ବ୍ୟକ୍ତିଗତ ବାଣିଜ୍ୟ ଚଳାଇଲେ। ଏଥିରେ ନବାବଙ୍କର ଅସୁବିଧା ହେଲା। ନବାବ ବାରଣ କଲେ ମଧ୍ୟ ବ୍ୟକ୍ତିଗତ ବାଣିଜ୍ୟ ସେହିପରି ଚାଲିଲା।

ଏହିସବୁ କାରଣରୁ ନବାବ କ୍ରୁଦ୍ଧହୋଇ କଲିକତା ଆକ୍ରମଣ କଲେ। କଲିକତାରେ ଥିବା କେତେକ ଇଂରେଜ ଆତ୍ମସମର୍ପଣ କଲେ। କଥିତ ଅଛି, ନବାବ ତାଙ୍କର ଜଣେ କର୍ମଚାରୀଙ୍କ ହାତରେ ଏହି ଇଂରେଜମାନଙ୍କର ଭାର ଦେଇଥିଲେ। ସେହି କର୍ମଚାରୀ ୧୪୬ ଜଣ ଇଂରେଜଙ୍କୁ ଗୋଟିଏ ଛୋଟ କୋଠରୀରେ ବନ୍ଦୀକଲେ। ଖରାଦିନ

ହୋଇଥିବାରୁ ସକାଳକୁ ଦେଖାଗଲା ଯେ ମୋଟେ ୨୩ ଜଣ ବଞ୍ଚି ଅଛନ୍ତି । ଏହାକୁ **ଅନ୍ଧକୂପ** ହତ୍ୟା କହନ୍ତି । ଏହା ସତ୍ୟ ନୁହେଁ ବୋଲି ବହୁତ ଐତିହାସିକଙ୍କର ମତ । ଇଂରେଜମାନେ ପରାସ୍ତ ହେବା ଖବର ମାନ୍ଦ୍ରାଜରେ ପହଞ୍ଚିବାରୁ କ୍ଲାଇବ୍ ବହୁତ ସୈନ୍ୟ ନେଇ ଆସି ନବାବଙ୍କ ସୈନ୍ୟଙ୍କୁ ପରାସ୍ତ କରି କଲିକତା ଅଧିକାର କଲେ ।

**ପଲାସୀ ଯୁଦ୍ଧ** :—କେତେକ କର୍ମଚାରୀ ସିରାଜଙ୍କୁ ତଡ଼ି ତାଙ୍କ ସେନାପତି ମିର୍ଜାଫରଙ୍କୁ ସିଂହାସନରେ ବସାଇବା ପାଇଁ ଷଡ଼ଯନ୍ତ୍ର କରିଥିଲେ । କ୍ଲାଇବ୍ ଆଶଙ୍କା କରୁଥିଲେ ଯେ ସିରାଜ ଫରାସୀମାନଙ୍କ ସହିତ ମିଳି ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଛନ୍ତି । ତେଣୁ ସେ ସିରାଜଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ରରେ ଯୋଗ ଦେଇ ନିଜର ସୈନ୍ୟ ନେଇ ମୁର୍ଶିଦାବାଦ୍ ଆଡ଼କୁ ଅଗ୍ରସର ହେଲେ । ପଲାସୀଠାରେ କ୍ଲାଇବ୍ ଓ ସିରାଜଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା । ସିରାଜଙ୍କ ସେନାପତି ବିଶ୍ୱାସଘାତକତା କରି କ୍ଲାଇବ୍‌ଙ୍କ ସଙ୍ଗେ ଯୋଗ ଦେଇଥିଲେ । ସିରାଜ ଯୁଦ୍ଧକ୍ଷେତ୍ରରୁ ପଳାଇ ଯାଉ ଯାଉ ମିରଜାଫରଙ୍କ ପୁଅଙ୍କ ଦ୍ୱାରା ନିହତ ହେଲେ । ମିରଜାଫର ବଙ୍ଗ ବିହାର ଓ ଓଡ଼ିଶାର ନବାବ ହେଲେ । ଇଂରେଜମାନେ ତାଙ୍କଠାରୁ ପୁରସ୍କାରସ୍ୱରୂପ ବହୁ ଧନ ଓ ଚବିଶ ପ୍ରଗଣା ଜମିଦାରୀ ପାଇଲେ ।

**ମିରଜାଫର** :—ମିରଜାଫର ନବାବ ହେବା ପରେ କ୍ଲାଇବ୍‌ଙ୍କର କ୍ଷମତା ବଙ୍ଗଳାରେ ବଢ଼ିଲା । କମ୍ପାନୀର କର୍ମଚାରୀମାନେ ନାନା ଅସଦୁପାୟରେ ଧନ ନେଇ ନବାବଙ୍କ ରାଜକୋଷ ଶୂନ୍ୟ କରିଦେଲେ । କ୍ଲାଇବ୍ ଇଂଲଣ୍ଡ ଯାତ୍ରା କରିବାପରେ ବଙ୍ଗଳାରେ ନାନା ଅତ୍ୟାଚାର

ରାଜବଲ୍ଲଭ ଓ ମିରଜାଫର ଇଂରେଜମାନଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କଲେ । କମ୍ପାନୀର କର୍ମଚାରୀମାନେ ମିରଜାଫରଙ୍କ ଜାମାତା ମିରକାସିମ୍‌ଙ୍କ ସଙ୍ଗେ ଗୋଟିଏ ଗୁପ୍ତ ସନ୍ଧିକରି ମିରଜାଫରଙ୍କୁ ତଡ଼ି ମିରକାସିମ୍‌ଙ୍କୁ ବଙ୍ଗର ନବାବ କଲେ । ମିରଜାଫର ବନ୍ଦୀ ହେଲେ ।

**ମିରକାସିମ୍** :—ମିରକାସିମ୍ ନବାବ ହୋଇ ଇଂରେଜମାନଙ୍କୁ ବହୁ ଧନ, ବର୍ଦ୍ଧମାନ, ମେଦିନୀପୁର ଓ ଚଟ୍ଟଗ୍ରାମ ଦେଲେ । ସେ ମୁଙ୍ଗେରକୁ ରାଜଧାନୀ ଉଠାଇ ନେଇ ଯାଇଥିଲେ । ଇଂରେଜମାନେ ବିନା ଶୁଳ୍କରେ ବାଣିଜ୍ୟ କରିଥିବାରୁ ଭାରତୀୟ ବଣିକମାନଙ୍କୁ ସମାନ ସୁବିଧା ଦେବାପାଇଁ ମିରକାସିମ୍ ବଙ୍ଗଳାରୁ ବାଣିଜ୍ୟ ଶୁଳ୍କ ଉଠାଇଦେଲେ । ଏଥିରେ ଇଂରେଜମାନଙ୍କର କ୍ଷତି ହେବାରୁ ମିରକାସିମ୍ ଓ ଇଂରେଜମାନଙ୍କ ମଧ୍ୟରେ ଯୁଦ୍ଧ ହେଲା । ମିରକାସିମ୍ ହାରିଯାଇ ଅଯୋଧ୍ୟାର ନବାବଙ୍କର ଆଶ୍ରୟ ନେଲେ ଓ ମିରଜାଫର ପୁନର୍ବାର ନବାବ ହେଲେ । ମିରକାସିମ୍, ଅଯୋଧ୍ୟାର ନବାବ୍ ଓ ଦିଲ୍ଲୀ ସମ୍ରାଟ୍ ସାହା ଆଲମ୍ ମିଳିତ ହୋଇ ଇଂରେଜମାନଙ୍କ ସହିତ ବକ୍ସାରଠାରେ ଖ୍ରୀ: ୧୭୬୪ରେ ଯୁଦ୍ଧକରି ପରାସ୍ତ ହେଲେ । ଅଯୋଧ୍ୟା ଇଂରେଜମାନଙ୍କ ଦ୍ୱାରା ଅଧିକୃତ ହେଲା । ପଲାସୀ ଯୁଦ୍ଧ ପରେ ଇଂରେଜ ରାଜ୍ୟ ଭାରତରେ ସ୍ଥାପିତ ହୋଇଥିଲା । କିନ୍ତୁ ବକ୍ସାର ଯୁଦ୍ଧରେ ଅଯୋଧ୍ୟାର ନବାବ ଓ ଦିଲ୍ଲୀସମ୍ରାଟ୍ ପରାସ୍ତ ହେବାରୁ ଭାରତରେ ଇଂରେଜ ରାଜ୍ୟ ଦୃଢ଼ୀଭୂତ ହେଲା ।

**ଲର୍ଡ କ୍ଲାଇବ୍** :—କ୍ଲାଇବ୍ ବିଲାତରେ ଥିବାବେଳେ କମ୍ପାନୀର କର୍ମଚାରୀମାନେ ଭଲରୂପେ କାର୍ଯ୍ୟ ଚଳାଇ ନ ପାରିବାରୁ ବଙ୍ଗଳାରେ ନାନା ବିଶୃଙ୍ଖଳା ଦେଖାଗଲା । ତେଣୁ କମ୍ପାନୀର ପରିଚାଳକମାନେ କ୍ଲାଇବ୍‌ଙ୍କୁ ଲର୍ଡ ଉପାଧି ଦେଇ ଖ୍ରୀ: ୧୭୬୫ ରେ ବଙ୍ଗଳାର ଗଭର୍ଣ୍ଣର କରି ପଠାଇଲେ । ସେ ଅଯୋଧ୍ୟାର ନବାବଙ୍କ ସହିତ

ସନ୍ଧି କରି ତାଙ୍କୁ ଅଯୋଧ୍ୟା ଫେରାଇ ଦେଲେ ଓ ତାଙ୍କଠାରୁ ଯୁଦ୍ଧ କ୍ଷତିପୂରଣ ବାବଦରେ ପଚାଶ ଲକ୍ଷ ଟଙ୍କା, ଏଲାହାବାଦ ଓ କୋରା ଜିଲା ବୁଝିନେଲେ। ସେ ଏହି ଦୁଇଟି ଜିଲା ଓ ବାର୍ଷିକ ଛବିଶ ଲକ୍ଷ ଟଙ୍କା ଭତ୍ତା ଦେବେ ବୋଲି କହି ସାହା ଆଲମଙ୍କଠାରୁ ବଙ୍ଗ, ବିହାର ଓ ଓଡ଼ିଶାର ଦେବାନୀ କ୍ଷମତା ପାଇଥିଲେ (୧) ବଙ୍ଗ, ବିହାର ଓ ଓଡ଼ିଶାରୁ ଇଂରେଜମାନେ ଖଜଣା ଆଦାୟ କଲେ ଓ ଦେବାନୀ ମକଦ୍ଦମାମାନ ବୁଝିଲେ। (୨) ବଙ୍ଗର ନବାବ ପେନ୍‌ସନ୍ ପାଇ କେବଳ ଫୌଜଦାରୀ ମକଦ୍ଦମାମାନ ବୁଝିଲେ। ଏହିପରି ଶାସନ ଇଂରେଜ ଓ ବଙ୍ଗର ନବାବଙ୍କ ଦ୍ୱାରା ପରିଚାଳିତ ହେଉଥିବାରୁ ଏହି ଶାସନକୁ 'ଦ୍ୱୈଶାସନ ପ୍ରଣାଳୀ' କହନ୍ତି। ଲର୍ଡ କ୍ଲାଇବ୍ ଏହି ଦ୍ୱୈଶାସନ ପ୍ରଣାଳୀ ଚଳାଇଥିଲେ।



ଏଥିଦ୍ୱାରା ପ୍ରଜାଙ୍କର ବିଶେଷ କ୍ଷତି ହେଲା ଓ ସେମାନଙ୍କର ଅସୁବିଧା ଓ ଅଭିଯୋଗ କେହି ଶୁଣିଲେ ନାହିଁ। କ୍ଲାଇବ୍ ବୁଦ୍ଧି, କୌଶଳ, ସାହସ ଓ କାର୍ଯ୍ୟଦକ୍ଷତା ଦେଖାଇ ଭାରତରେ ଇଂରେଜ ଶକ୍ତି ପ୍ରତିଷ୍ଠା କରି ଖ୍ରୀ: ୧୭୬୭ ରେ ବିଲାତ ଯାତ୍ରା କଲେ।

**ପ୍ରଥମ ମହୀଶୂର ଯୁଦ୍ଧ** ( ଖ୍ରୀ: ୧୭୬୭—ଖ୍ରୀ: ୧୭୬୯ ) :— କ୍ଲାଇବ୍ ବିଲାତ ଯାତ୍ରା କରିବାବେଳେ **ହାଇଦର ଅଲି** ମହୀଶୂରର



ହିନ୍ଦୁ ରାଜାମାନଙ୍କୁ ତଡ଼ି ନିଜେ ସେଠାର ନବାବ ହେଲେ । ଇଂରେଜମାନେ ହାଇଦରଙ୍କ ବିରୁଦ୍ଧରେ ନିଜାମ ଓ ମରହଟ୍ଟାମାନଙ୍କୁ ସାହାଯ୍ୟ ଦେଉଥିବାରୁ ହାଇଦର ଖ୍ରୀ : ୧୭୬୯ ରେ ମାନ୍ଦ୍ରାଜ ଆକ୍ରମଣ କରିଥିଲେ । ଏହାକୁ 'ପ୍ରଥମ ମହୀଶୂର ଯୁଦ୍ଧ' କହନ୍ତି । ଇଂରେଜମାନେ ହାରିଯିବା ଭୟରେ ସନ୍ଧି କଲେ । ଏହାଦ୍ୱାରା ହାଇଦରଙ୍କୁ କୌଣସି ଶତ୍ରୁ ଆକ୍ରମଣ କଲେ ଇଂରେଜମାନେ ତାଙ୍କୁ ସାହାଯ୍ୟ କରିବାକୁ ବାଧ୍ୟ ରହିଲେ ।

---

## ଚତୁର୍ବିଂଶ ଅଧ୍ୟାୟ

**ୱାରେନ୍ ହେଷ୍ଟିଂସ୍** (ଖ୍ରୀ: ୧୭୭୨—ଖ୍ରୀ: ୧୭୮୫ ):— କ୍ଲାଇଭ୍‌ଙ୍କ ପରେ ବଙ୍ଗଳାର ଦୁଇଜଣ ଅସ୍ଥାୟୀ ଗଭର୍ଣ୍ଣରଙ୍କ ସମୟରେ ସେଠାରେ ବିଶୃଙ୍ଖଳା ଦେଖାଯିବାରୁ କମ୍ପାନୀର ପରିଚାଳକମାନେ ଖ୍ରୀ: ୧୭୭୨ ରେ ୱାରେନ୍ ହେଷ୍ଟିଂସ୍‌ଙ୍କୁ ବଙ୍ଗଳାର ଗଭର୍ଣ୍ଣର କରି ପଠାଇଲେ ।

**ଶାସନ ସଂସ୍କାର**:— ୱାରେନ୍ ହେଷ୍ଟିଂସ୍ କ୍ଲାଇଭ୍‌ଙ୍କର ଦ୍ୱିଶାସନ ପ୍ରଣାଳୀରେ ବହୁତ ଅସୁବିଧା ଦେଖି ସୁବିଧାରେ ରାଜସ୍ୱ ଆଦାୟ କରିବାପାଇଁ ସେ ବଙ୍ଗ, ବିହାର ଓ ଓଡ଼ିଶାକୁ ଭେଟେଗୁଡ଼ିଏ ଜିଲ୍ଲାରେ ବିଭକ୍ତ କରିଥିଲେ । ପ୍ରତି ଜିଲ୍ଲାରେ ଜଣେ ଲେଖାଏଁ ଗୋରା କଲେକ୍ଟର ଥିଲେ, ଫୌଜଦାରୀ ମକଦ୍ଦମା ବୁଝିବାପାଇଁ ମାଜିଷ୍ଟ୍ରେଟମାନଙ୍କୁ

ନିଯୁକ୍ତ କରିଥିଲେ । ନିମ୍ନ କୋର୍ଟମାନଙ୍କର ଅପିଲ ଶୁଣିବାପାଇଁ କଲିକତାରେ **ସଦର ଦେବାନୀ ଅଦାଲତ୍ ଓ ସଦର ନିଜାମତ୍ ଅଦାଲତ** ସ୍ଥାପିତ ହୋଇଥିଲା । ରାଜସ୍ୱ ସମ୍ବନ୍ଧରେ ମକଦ୍ଦମାମାନ ପ୍ରଥମ ଅଦାଲତରେ ଓ ଶାନ୍ତିରକ୍ଷା ସମ୍ବନ୍ଧରେ ମକଦ୍ଦମାମାନ ଦ୍ୱିତୀୟ ଅଦାଲତରେ ବିଚାର କରାଯାଉଥିଲା । ହେଷ୍ଟିଙ୍ଗସ୍ ରାଜକୋଷକୁ ମୁର୍ଶିଦାବାଦରୁ କଲିକତାକୁ ଉଠାଇଆଣି ରାଜସ୍ୱ ଆଦାୟର ତଦ୍ଧ ନେବାପାଇଁ ଗୋଟିଏ ରେଭିନିଉ ବୋର୍ଡ଼ ଗଠନ କରିଥିଲେ । ସେ ରାଜସ୍ୱ ଆଦାୟପାଇଁ ପ୍ରଥମେ ପାଞ୍ଚବର୍ଷରେ ଥରେ ଓ ପରେ ପ୍ରତିବର୍ଷ ଜମିଦାରୀ ନିଲମ କରାଇଲେ ।

**ବ୍ୟୟସଙ୍କୋଚ** :—ହେଷ୍ଟିଙ୍ଗସ୍ ବଙ୍ଗ ନବାବଙ୍କର ପେନ୍‌ସନ୍ ଅଧା କାଟିଦେଲେ । ମୋଗଲ ସମ୍ରାଟ୍ ସାହାଆଲମ୍ ଇଂରେଜମାନଙ୍କ ଆଶ୍ରୟ ଛାଡ଼ି ମରହଟ୍ଟାମାନଙ୍କର ଆଶ୍ରୟ ନେବାରୁ ହେଷ୍ଟିଙ୍ଗସ୍ ତାଙ୍କର ବାର୍ଷିକବୃତ୍ତି ଛବିଶ ଲକ୍ଷ ଟଙ୍କା ବନ୍ଦ କରିଦେଲେ । ତାଙ୍କଠାରୁ ଏଲାହାବାଦ ଓ କୋରା ଜିଲା ଛଡ଼ାଇଆଣି ପଚାଶ ଲକ୍ଷ ଟଙ୍କାରେ ଅଯୋଧ୍ୟାର ନବାବଙ୍କୁ ବିକିଦେଲେ ।

**ରେଗୁଲେଟିଙ୍ଗ୍ ଆକ୍ଟ୍** :—ଖ୍ରୀ: ୧୭୭୩ ରେ ବିଲାତ ପାର୍ଲିଅମେଣ୍ଟରେ କମ୍ପାନୀର ଶାସନପାଇଁ ଏହି ଆଇନ ଗଢ଼ାହେଲା ।

ଏହି ଆଇନ ଅନୁସାରେ (୧) ବଙ୍ଗର ଗଭର୍ଣ୍ଣର ଭାରତର ଗଭର୍ଣ୍ଣର ଜେନେରାଲ ହେଲେ । ବମ୍ବେ ଓ ମାନ୍ଦ୍ରାଜର ଗଭର୍ଣ୍ଣରଙ୍କ ଉପରେ କେତେକ ବିଷୟରେ ତାଙ୍କର କ୍ଷମତା ରହିଲା । (୨) ଗଭର୍ଣ୍ଣର ଜେନେରାଲଙ୍କୁ ଶାସନକାର୍ଯ୍ୟରେ ସାହାଯ୍ୟ କରିବାକୁ ଗୋଟିଏ କାଉନ୍‌ସିଲ ବା ସଭା ରହିଲା । ସେଥିରେ ଚାରିଜଣ ସଭ୍ୟ ଥିଲେ । (୩) କଲିକତାରେ ଗୋଟିଏ ସୁପ୍ରିମ୍ କୋର୍ଟ ସ୍ଥାପିତ ହେଲା । ଏଥିରେ ଜଣେ ପ୍ରଧାନ ବିଚାରପତି

ଓ ତନିଜଣ ଅଧସ୍ତନ ବିଚାରପତି ଥିଲେ । କମ୍ପାନୀର କର୍ମଚାରୀମାନଙ୍କର ଅପରାଧ ବିଚାର କରିବା ଏହି କୋର୍ଟର ପ୍ରଧାନ କାର୍ଯ୍ୟ ଥିଲା । କମ୍ପାନୀ ଭାରତଶାସନ ବିଷୟରେ ସବୁକଥା ବିଲାତ ପାର୍ଲିଆମେଣ୍ଟକୁ ଜଣାଇବାକୁ ବାଧ୍ୟହେଲେ । ଏହି ଆଇନ ଅନୁସାରେ ୱାରେନ୍ ହେଷ୍ଟିଙ୍ଗ୍ସ୍ ଭାରତର ପ୍ରଥମ ଗଭର୍ଣ୍ଣର ଜେନେରାଲ ହେଲେ ।

ରେଗୁଲେଟିଙ୍ଗ୍ ଆକ୍ଟ୍‌ରେ କେତେକ ଦୋଷ ଥିଲା । ଗଭର୍ଣ୍ଣର ଜେନେରାଲ ଓ ତାଙ୍କ କାଉନ୍‌ସିଲରେ କାହାର କ୍ଷମତା ବେଶୀ ସ୍ଥିର ହୋଇନଥିବାରୁ ସେମାନଙ୍କ ମଧ୍ୟରେ ବିବାଦ ହୋଇଥିଲା । ସୁପ୍ରିମ୍ କୋର୍ଟ ଓ କାଉନ୍‌ସିଲ୍ ମଧ୍ୟରେ କ୍ଷମତା ପାଇଁ ମଧ୍ୟ ବିବାଦ ଲାଗିଲା ।

---

# ପଞ୍ଚବିଂଶ ଅଧ୍ୟାୟ

## ଗଭର୍ଣ୍ଣର ଜେନେରାଲଗଣ

### ୱାରେନ୍ ହେଷ୍ଟିଙ୍ଗ୍ସ୍ ( ଖ୍ରୀ: ୧୭୭୪—ଖ୍ରୀ: ୧୭୮୫ )

**ରୋହିଲା ଯୁଦ୍ଧ** :—ରୋହିଲଖଣ୍ଡର ଅଧିବାସୀମାନେ ମରହଟ୍ଟାମାନଙ୍କ ଆକ୍ରମଣରୁ ରକ୍ଷାପାଇଲେ ଅଯୋଧ୍ୟାର ନବାବଙ୍କୁ ଚାଳିଶ ଲକ୍ଷ ଟଙ୍କା ଦେବେ ବୋଲି ଚୁକ୍ତିକରି ତାଙ୍କ ସହିତ ସନ୍ଧି କରିଥିଲେ । ମରହଟ୍ଟାମାନଙ୍କ ଆକ୍ରମଣରୁ ରକ୍ଷା ପାଇଲେ ମଧ୍ୟ ରୋହିଲାମାନେ ଅଯୋଧ୍ୟାର ନବାବଙ୍କୁ ଟଙ୍କା ନ ଦେବାରୁ, ସେ ୱାରେନ୍ ହେଷ୍ଟିଙ୍ଗ୍‌ସ୍‌ଙ୍କୁ ବହୁ ଧନ ଦେଇ ଇଂରେଜସୈନ୍ୟମାନଙ୍କ ସାହାଯ୍ୟରେ



ସ୍ୱେଚ୍ଛାକୃତ ଅଧିକାର କଲେ । ସ୍ୱେଚ୍ଛାରମାନଙ୍କର ଇଂରେଜମାନଙ୍କ ସହିତ କୌଣସି ଶତ୍ରୁତା ନଥିବାରୁ ଅନେକ ଐତିହାସିକ ଏହା ହେଷ୍ଟିଙ୍ଗସ୍‌ଙ୍କର ଅନ୍ୟାୟ କାର୍ଯ୍ୟ ବୋଲି ମନେ କରନ୍ତି ।

**ନନ୍ଦକୁମାରଙ୍କ ଫାଶି :—**

ନନ୍ଦକୁମାର ନାମରେ କଲିକତାର ଜଣେ ବ୍ରାହ୍ମଣ କାଉନ୍‌ସିଲ୍ ନିକଟରେ ହେଷ୍ଟିଙ୍ଗସ୍ ଲାଞ୍ଚ ନେଇଛନ୍ତି ବୋଲି ଅଭିଯୋଗ ଆଣିଥିଲେ । ହେଷ୍ଟିଙ୍ଗସ୍ ମଧ୍ୟ ନନ୍ଦକୁମାରଙ୍କ ବିରୁଦ୍ଧରେ କେତେକ ଅଭିଯୋଗ ଆଣିଥିଲେ । ଏହି ସମୟରେ ମୋହନ ପ୍ରସାଦ ନାମକ ଏକ ବ୍ୟକ୍ତି ନନ୍ଦକୁମାରଙ୍କ ବିରୁଦ୍ଧରେ ଗୋଟିଏ ଜାଲ୍ ମକଦ୍ଦମା ଚଳାଇଲେ । ହେଷ୍ଟିଙ୍ଗସ୍‌ଙ୍କ ମକଦ୍ଦମା ବିଚାର ନସରିବା ପୂର୍ବରୁ ନନ୍ଦକୁମାର ଦୋଷୀ ବୋଲି ପ୍ରମାଣିତ ହୋଇ ଫାଶି ପାଇଲେ । ହେଷ୍ଟିଙ୍ଗସ୍ ସମ୍ଭବତଃ ସୁପ୍ରିମ୍ କୋର୍ଟର ବିଚାରପତିମାନଙ୍କୁ ନନ୍ଦକୁମାରଙ୍କୁ ଫାଶି ଦେବାପାଇଁ ପ୍ରବର୍ତ୍ତାଇଥିଲେ । ଏଥିପାଇଁ ପରେ ସେ ନିନ୍ଦା ପାଇଲେ ।

**ପ୍ରଥମ ମରହଟ୍ଟା ସମର ( ଖ୍ରୀ: ୧୭୭୫—୧୭୮୨ ) :—**

**ବାଲାଜୀ ବାଜୀ** ରାଓଙ୍କ ପରେ ମଧୁ ରାଓ ଓ ନାରାୟଣ ରାଓ ଯଥାକ୍ରମେ ପେଶବା ହେଲେ । ନାରାୟଣ ରାଓଙ୍କ ପରେ ତାଙ୍କର ଖୁଡ଼ୁତା ରଘବା ପେଶବା ହେଲେ । ନାରାୟଣ ରାଓଙ୍କ ମୃତ୍ୟୁର କେତେଦିନ ପରେ ତାଙ୍କର ଗୋଟିଏ ପୁଅ ଜନ୍ମିଲା । ପ୍ରଧାନ ମନ୍ତ୍ରୀ **ନାନାଫର୍ଣ୍ଣାବିଶ୍** ଶିଶୁପୁତ୍ର ମଧୁରାଓ

ନାରାୟଣଙ୍କୁ ପେଶବା କଲେ । ରଘବା ସିଂହାସନରୁ ତଡ଼ାଖାଇ ବମ୍ବେରେ ଇଂରେଜମାନଙ୍କୁ ସାହାଯ୍ୟ ମାଗିଲେ । ସାତବର୍ଷକାଳ ଯୁଦ୍ଧ ଲାଗିଲା । ହୋଲ୍‌କାର ଓ ସିନ୍ଧିଆ ମଧୁ ରାଓଙ୍କୁ ସାହାଯ୍ୟ ଦେଲେ । ଏହାକୁ ପ୍ରଥମ ମରହଟ୍ଟା ସମର କହନ୍ତି । ଶେଷରେ ସାଲବାଇଠାରେ ସନ୍ଧି ହେଲା । ସନ୍ଧି ଫଳରେ ମଧୁ ରାଓ ନାରାୟଣ ପେଶବା ହେଲେ । ରଘବା ପେନ୍‌ସନ୍ ପାଇଲେ ଓ ଇଂରେଜମାନେ ସାଲସେଟ୍ ଓ ଏଲିଫାଣ୍ଟା ନାମକ ଦୁଇଟି ଦ୍ୱୀପ ପାଇଲେ ।

**ଦ୍ୱିତୀୟ ମହୀଶୂର ସମର** (ଖ୍ରୀ: ୧୭୮୦—ଖ୍ରୀ: ୧୭୮୪):— ପ୍ରଥମ ମହୀଶୂର ଯୁଦ୍ଧର ସନ୍ଧି ଅନୁସାରେ ଇଂରେଜମାନେ ହାଇଦରଙ୍କୁ ଯୁଦ୍ଧ ସମୟରେ ସାହାଯ୍ୟ ଦେବାର କଥା । ମରହଟ୍ଟାମାନେ ମହୀଶୂର ଆକ୍ରମଣ କରିଥିଲେ ମଧ୍ୟ ଇଂରେଜମାନେ ତାଙ୍କୁ ସାହାଯ୍ୟ କଲେ ନାହିଁ । ଏହି ସମୟରେ ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ ଯୁଦ୍ଧ ଲାଗିବାରୁ ଇଂରେଜମାନେ ହାଇଦରଙ୍କ ରାଜ୍ୟରେ ଥିବା ଫରାସୀମାନଙ୍କର ପଣ୍ଡିଚେରୀ ଓ ମାହୀ ଆକ୍ରମଣ କଲେ । ତେଣୁ ହାଇଦର ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲେ । ତାଙ୍କୁ ୮୦ ବର୍ଷ ହୋଇଥିଲେ ମଧ୍ୟ ସେ ବୀରତ୍ୱର ସହିତ ଲଢ଼ିଥିଲେ । ସେ ମରିଯିବା ପରେ ତାଙ୍କ ପୁଅ ଟିପୁ ସୁଲତାନ୍ ଯୁଦ୍ଧ ଚଳାଇଲେ । ଖ୍ରୀ: ୧୭୮୪ ରେ ମାଙ୍ଗାଲୋରଠାରେ ସନ୍ଧି ହେବାରୁ ଇଂରେଜ ଓ ଟିପୁ ସୁଲତାନ ଯୁଦ୍ଧରେ ହରାଇଥିବା ନିଜ ନିଜର ରାଜ୍ୟ ଫେରି ପାଇଥିଲେ ।

**ଚୈତ ସିଂହ** :—ହେଷ୍ଟିଙ୍ଗ୍‌ସ୍ ରାଜସ୍ୱ ବ୍ୟତୀତ ଅନ୍ୟାୟଭାବରେ ଦୁଇଥର ବନାରସର ରାଜା ଚୈତ ସିଂହଙ୍କଠାରୁ ଅଧିକା ଟଙ୍କା ଆଦାୟ କରି ତୃତୀୟ ଥର ତାଙ୍କୁ କେତେ ଅଶ୍ୱାରୋହୀ ସୈନ୍ୟ ମାଗିଲେ । ସୈନ୍ୟ ପଠାଇବାରେ ବିଳମ୍ବ ହେବାରୁ ସେ ବନାରସ ଯାଇ ଚୈତ ସିଂହଙ୍କୁ ବନ୍ଦୀ କଲେ । ଚୈତ ସିଂହ କୌଶଳରେ ଖସିଯାଇ ତାଙ୍କ ସୈନ୍ୟମାନଙ୍କ ସଙ୍ଗେ ମିଶି ବିଦ୍ରୋହ କଲେ । ହେଷ୍ଟିଙ୍ଗ୍‌ସ୍ ଚୈତ ସିଂହଙ୍କୁ ସିଂହାସନରୁ ତଡ଼ି ତାଙ୍କ

ପୁତ୍ରଙ୍କୁ ସିଂହାସନରେ ବସାଇଲେ ଓ ବନାରସର କର ବଢ଼ାଇ ଦେଲେ । ଏହା ତାଙ୍କର ଗୋଟିଏ ବଡ଼ ଦୋଷ ବୋଲି ଅନେକ ମନେ କରନ୍ତି ।

**ଅଯୋଧ୍ୟାର ବେଗମ୍** :—ଅଯୋଧ୍ୟାର ନବାବ ସେତେବେଳକୁ ଇଂରେଜମାନଙ୍କର ବହୁତ ଟଙ୍କା ବାକି ରଖିଥିଲେ । ରାଜକୋଷରେ ଟଙ୍କା ନଥିବାରୁ ହେଷ୍ଟିଙ୍ଗସ୍ ନବାବଙ୍କର ବିଧବା ମା ଓ ବୁଢ଼ୀମାଙ୍କ ଉପରେ ନାନାପ୍ରକାର ଅତ୍ୟାଚାର କରି ପ୍ରାୟ ୭୬ ଲକ୍ଷ ଟଙ୍କା ଆଦାୟ କରିଥିଲେ । ସେଥିପାଇଁ ହେଷ୍ଟିଙ୍ଗସ୍ ନିନ୍ଦା ପାଇଥିଲେ ।

**ପିଟ୍‌ଙ୍କ ଭାରତ ଆଇନ** :—ଖ୍ରୀ: ୧୭୮୪ରେ ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ପିଟ୍ ଭାରତର ଶାସନ ନିମନ୍ତେ ଗୋଟିଏ ନୂଆ ଆଇନ ଗଢ଼ିଲେ । ଏହି ଆଇନ ଅନୁସାରେ ଇଂଲଣ୍ଡର ଛଅଜଣ ସଭ୍ୟଙ୍କୁ ନେଇ ବୋର୍ଡ଼ ଅଫ୍ କଣ୍ଟ୍ରୋଲ୍ ନାମରେ ଗୋଟିଏ ସଭା ଗଠିତ ହେଲା । କମ୍ପାନୀର ଭାରତ ଶାସନ ପରିଚାଳନା ଏହି ବୋର୍ଡ଼ ପର୍ଯ୍ୟବେକ୍ଷଣ କଲେ ।

**ହେଷ୍ଟିଙ୍ଗସ୍‌ଙ୍କ ବିରୁଦ୍ଧରେ ଅଭିଯୋଗ** :—ଖ୍ରୀ: ୧୭୮୫ରେ ହେଷ୍ଟିଙ୍ଗସ୍ ବିଲାତ ଫେରିଗଲେ । ନନ୍ଦକୁମାରଙ୍କ ଫାଶି, ରୋହିଲା ଯୁଦ୍ଧ, ଚେଟ୍‌ସିଂହ ଓ ଅଯୋଧ୍ୟାର ବେଗମ୍‌ମାନଙ୍କ ପ୍ରତି ଅତ୍ୟାଚାର ପ୍ରଭୃତି ତାଙ୍କର ଅନ୍ୟାୟ କାର୍ଯ୍ୟପାଇଁ ବିଲାତ ପାର୍ଲିଆମେଣ୍ଟରେ ତାଙ୍କ ବିରୁଦ୍ଧରେ ବହୁତ ଅଭିଯୋଗ ଆସିଥିଲା । ସାତବର୍ଷ ବିଚାର ପରେ ସେ ନିର୍ଦ୍ଦୋଷ ପ୍ରମାଣିତ ହେଲେ । ସେତେବେଳକୁ ସେ ଏପରି ଧନଶୂନ୍ୟ ହୋଇଥିଲେ ଯେ ସେ ଅତି ଦୁଃଖ ଓ ଅଭାବରେ ପଡ଼ି ପ୍ରାଣତ୍ୟାଗ କରିଥିଲେ ।

**ଲର୍ଡ଼ କର୍ଣ୍ଣଓ୍ୱାଲିସ୍** :—(ଖ୍ରୀ: ୧୭୮୬—ଖ୍ରୀ: ୧୭୯୩) :—ୱାରେନ୍ ହେଷ୍ଟିଙ୍ଗସ୍‌ଙ୍କର ଯିବାର ଏକବର୍ଷ ପରେ କର୍ଣ୍ଣଓ୍ୱାଲିସ୍ ଭାରତର ବଡ଼ଲାଟ ହେଲେ । ତାଙ୍କ ସମୟରେ ଚିରସ୍ଥାୟୀ ବନ୍ଦୋବସ୍ତ, ତୃତୀୟ ମହୀଶୂର ଯୁଦ୍ଧ ଓ କେତେକ ଶାସନ ସଂସ୍କାର ହୋଇଥିଲା ।

**ତୃତୀୟ ମହୀଶୂର ଯୁଦ୍ଧ** (ଖ୍ରୀ: ୧୭୯୦—ଖ୍ରୀ: ୧୭୯୨) :— ଟିପୁ ଇଂରେଜମାନଙ୍କର ମିତ୍ରରାଜ୍ୟ ତ୍ରିବାଙ୍କୁଡ ଆକ୍ରମଣ କରିବାରୁ କର୍ଣ୍ଣୱାଲିସ୍, ମରହଟ୍ଟା ଓ ନିଜାମ ମିଶି ଟିପୁଙ୍କ ବିରୁଦ୍ଧରେ ଯୁଦ୍ଧ କଲେ। ଖ୍ରୀ: ୧୭୯୨ ରେ କର୍ଣ୍ଣୱାଲିସ୍ ଟିପୁଙ୍କ ରାଜଧାନୀ ଶ୍ରୀରଙ୍ଗପତ୍ତନ ଅବରୋଧ କରିବାରୁ ସେ ନିଜ ରାଜ୍ୟର ଅର୍ଦ୍ଧେ ଓ ୩୩୦ ଲକ୍ଷ ଟଙ୍କା ଯୁଦ୍ଧ ଖର୍ଚ୍ଚ ଦେଇ ରକ୍ଷାକଲେ। ନିଜାମ, ମରହଟ୍ଟା ଓ ଇଂରେଜମାନେ ଏହାକୁ ବାଣ୍ଟି ନେଇଥିଲେ।



**ଶାସନ ସଂସ୍କାର** :—କର୍ଣ୍ଣୱାଲିସ୍ କଲେକ୍ଟରମାନଙ୍କ ହାତରୁ ଦେୱାନୀ ମକଦ୍ଦମା ବିଚାର କ୍ଷମତା କାଢ଼ିନେଇ କେବଳ ଖଜଣା ଆଦାୟ ଭାର ସେମାନଙ୍କ ହାତରେ ରଖିଲେ। ଦେୱାନୀ ମକଦ୍ଦମା ବିଚାର ପାଇଁ ପ୍ରତି ଜିଲ୍ଲାରେ ଜଣେ ଲେଖାଏଁ ଗୋରା ଜଜ୍ ରହିଲେ। ଦେୱାନୀ ମକଦ୍ଦମାର ଅପିଲ୍ ଶୁଣିବାପାଇଁ କଲିକତା, ଢାକା, ମୁର୍ଶିଦାବାଦ ଓ ପାଟଣାରେ ପ୍ରାଦେଶିକ ବିଚାରାଳୟମାନ ସ୍ଥାପିତ ହୋଇଥିଲା। ଏହି ବିଚାରାଳୟମାନଙ୍କର କେତେକ ଜଜ୍ ବୁଲି ବୁଲି ବିଚାର କରୁଥିଲେ। ସର୍ବଶେଷରୁ ଦେୱାନୀ ଅପିଲ୍ କୋର୍ଟ ସଦର ଦେୱାନୀ ଅଦାଲତ ଓ ସର୍ବଶେଷରୁ ଫୌଜଦାରୀ ଅପିଲ୍ କୋର୍ଟ **ସଦର ନିଜାମତ୍ ଅଦାଲତ** ପୂର୍ବପରି ରହିଲା। ଶାସନର ସୁବିଧାପାଇଁ ଜିଲ୍ଲାମାନ କେତେକ ଥାନାରେ ବିଭକ୍ତ ହେଲା ଓ ପ୍ରତି ଥାନାରେ ଜଣେ ଲେଖାଏଁ ଦାରୋଗା ନିଯୁକ୍ତ ହେଲେ। ଜିଲ୍ଲାର ପୁଲିସମାନେ ଜିଲ୍ଲା ଜଜ୍‌ଙ୍କ ଅଧୀନରେ ରହିଲେ।

**ଚିରସ୍ଥାୟୀ ବନ୍ଦୋବସ୍ତ** :—ହେଷ୍ଟିଙ୍ଗସ୍‌ଙ୍କ ବର୍ଷିକିଆ ବନ୍ଦୋବସ୍ତ ଦ୍ୱାରା ଖଜଣାସବୁ ଭଲରୂପେ ଆଦାୟ ହେଉ ନଥିବା, କାଗଜ ପତ୍ରରେ ଗଣ୍ଡଗୋଳ ଯୋଗୁଁ ପ୍ରଜାମାନେ ହଇରାଣ ହେଉଥିଲେ । ତେଣୁ କର୍ଣ୍ଣୱାଲିସ୍ ଜମିଦାରମାନଙ୍କ ସଙ୍ଗେ ଦଶବର୍ଷିଆ ବନ୍ଦୋବସ୍ତ କଲେ । ଏଥିରେ ଲାଭ ହେବାରୁ କର୍ଣ୍ଣୱାଲିସ୍ ଏହି ବନ୍ଦୋବସ୍ତକୁ ଖ୍ରୀ:୧୭୯୩ରେ ଚିରସ୍ଥାୟୀ କରିଥିଲେ ।

ଏହି ବନ୍ଦୋବସ୍ତ ଫଳରେ ଅସ୍ଥାୟୀ ଜମିଦାରମାନେ ଚିରସ୍ଥାୟୀ ହେଲେ । ଜମିର ପ୍ରକୃତ ଅଧିକାରୀ ପ୍ରଜାମାନଙ୍କ ପରିବର୍ତ୍ତେ ସେମାନେ ମାଲିକ ହେଲେ । ସେମାନେ ସରକାରଙ୍କୁ ନିର୍ଦ୍ଦିଷ୍ଟ ପରିମାଣର ଖଜଣା ଦେଇ ପ୍ରଜାମାନଙ୍କ ଉପରେ କର ବଢ଼ାଇଲେ ଓ ଆଉ ଅନେକ ଅନ୍ୟାୟ ପାଉଣା ସେମାନଙ୍କଠାରୁ ଆଦାୟ କଲେ । ବନ୍ଦୋବସ୍ତ ଚିରସ୍ଥାୟୀ ହୋଇଥିବାରୁ ଅବସ୍ଥା ବଦଳିଲେ ମଧ୍ୟ ସରକାର ଅଧିକ ଖଜଣା ବଢ଼ାଇ ପାରିଲେ ନାହିଁ । ଏହି ବନ୍ଦୋବସ୍ତ ବଙ୍ଗ, ବିହାର ଓ ଓଡ଼ିଶାରେ ଚାଲିଥିଲା । ଆମ ଓଡ଼ିଶାରେ ପାରଳା, ଜୟପୁର, ଖଲିକୋଟ, କଣିକା, କୁଜଙ୍ଗ ପ୍ରଭୃତି ଚିରସ୍ଥାୟୀ ବନ୍ଦୋବସ୍ତ ମାହାଲମାନ ଅଛି ।

**କମ୍ପାନୀର ସନନ୍ଦ** :—ଭାରତରେ ଏକଚାଟିଆ ବାଣିଜ୍ୟ କରିବାପାଇଁ କମ୍ପାନୀ ଇଂଲଣ୍ଡର ରାଜାଙ୍କଠାରୁ ଯେଉଁ ସନନ୍ଦ ପାଇଥିଲେ ତାହାର କାଳ ଖ୍ରୀ: ୧୭୯୩ ରେ ପୂରିଯିବାରୁ ଆଉ କୋଡ଼ିଏ ବର୍ଷପାଇଁ କମ୍ପାନୀ ନୂଆ ସନନ୍ଦ ପାଇଥିଲେ ।

**ସାର୍ ଜନ୍ ସୋର** ( ଖ୍ରୀ: ୧୭୯୪—ଖ୍ରୀ: ୧୭୯୮ ) :—ସେ ଭାରତର କୌଣସି ଯୁଦ୍ଧରେ ଯୋଗ ନଦେଇ ଉଦାସୀନ ନୀତି ଅନୁସରଣ କରିଥିବାରୁ ମରହଟ୍ଟାମାନେ ନିଜାମଙ୍କ ରାଜ୍ୟରୁ ଅଧେ ଛଡ଼ାଇ ନେଇଥିଲେ ।

**ଲର୍ଡ଼ ୱେଲେସ୍‌ଲି** (ଖ୍ରୀ: ୧୭୯୮—ଖ୍ରୀ: ୧୮୦୫) :—ସାର୍ ଜନ୍ ସୋର୍‌ଙ୍କ ଉଦାସୀନ **ନୀତି** ଫଳରେ ଭାରତରେ ମରହଟ୍ଟା ଶକ୍ତି ବଢ଼ି-ଯାଇଥିଲା । ଫରାସୀମାନେ ଟିପୁଙ୍କ ସାହାଯ୍ୟରେ ଭାରତ ଜୟ କରିବାକୁ ଚେଷ୍ଟା କରୁଥିଲେ। ଲର୍ଡ ୱେଲେସ୍‌ଲିଙ୍କର ଧାରଣା ଥିଲା ଭାରତର ଦେଶୀୟ ରାଜ୍ୟ-ମାନଙ୍କରେ ଭଲ ଶାସନ ଚାଲୁ ନାହିଁ । ସେ **ଦେଶୀୟ** ରାଜ୍ୟମାନଙ୍କୁ **ଇଂରେଜ** ଶାସନ ଅଧୀନକୁ ଆଣିବାକୁ ଓ ଭାରତରୁ ଫରାସୀ କ୍ଷମତା ଲୋପ କରିବାକୁ ଚେଷ୍ଟାକରିଥିଲେ । ଦେଶୀୟରାଜ୍ୟରଶାସକମାନଙ୍କୁ ଇଂରେଜ-ମାନଙ୍କ ଅଧୀନରେ ଆଣିବାକୁ ୱେଲେସ୍‌ଲି ସାମନ୍ତ ସନ୍ଧି ବା ପରସ୍ପର ସାହାଯ୍ୟକୃତ ସନ୍ଧି ନାମରେ ଗୋଟିଏ ନୂଆ ଉପାୟ ଅବଲମ୍ବନ କରିଥିଲେ ।



**ସାମନ୍ତସନ୍ଧିର ସର୍ତ୍ତ** :—ଯେଉଁ ଶାସକମାନେ ସାମନ୍ତ ସନ୍ଧି ଗ୍ରହଣ କରିବେ ଇଂରେଜମାନେ ସେମାନଙ୍କ ରାଜ୍ୟରୁ କିଛି ଅଂଶ ବା କେତେକ ଧନ ନେଇ ସେମାନଙ୍କୁ ବୈଦେଶିକ **ଆକ୍ରମଣରୁ** ରକ୍ଷା କରିବେ । ସେମାନେ ନିଜ ରାଜ୍ୟରେ ଇଂରେଜମାନଙ୍କ ଛଡ଼ା ଅନ୍ୟ କୌଣସି ଇଉରୋପୀୟଙ୍କୁ ଚାକିରିରେ ରଖାଇବେ ନାହିଁ ଓ କମ୍ପାନୀର ବିନା ଅନୁମତିରେ **ଅନ୍ୟ** କାହା ସଙ୍ଗେ ଯୁଦ୍ଧ ବା ସନ୍ଧି କରିପାରିବେ ନାହିଁ । ନିଜାମ ଦୁର୍ବଳ ଥିବାରୁ ପ୍ରଥମେ ଏହା ଗ୍ରହଣ କରି ଇଂରେଜଙ୍କ ଅଧୀନ ହେଲେ । ପେଶବା ବାଜୀରାଓ ଖ୍ରୀ: ୧୮୦୨ ରେ ବେସିନ୍‌ଠାରେ ସାମନ୍ତ ସନ୍ଧି ଗ୍ରହଣ କରିଥିଲେ ।

**ଚତୁର୍ଥ ମହୀଶୂର ଯୁଦ୍ଧ** ( ଖ୍ରୀ: ୧୭୯୯ ) :—ଟିପୁ ସାମନ୍ତ ସନ୍ଧି ଗ୍ରହଣ ନ କରିବାରୁ ଓ ଇଂରେଜମାନଙ୍କ ବିରୁଦ୍ଧରେ ଫରାସୀମାନଙ୍କ



ସଙ୍ଗେ ଷଡ଼ଯନ୍ତ୍ର କରୁଥିବାରୁ ୱେଲେସ୍‌ଲି ତାଙ୍କ ବିରୁଦ୍ଧରେ ଯୁଦ୍ଧ କଲେ । ଏହାକୁ ଚତୁର୍ଥ ମହୀଶୂର ସମର କହନ୍ତି । ନିଜାମ ଓ ମରହଟ୍ଟାଙ୍କ ସାହାଯ୍ୟରେ ଇଂରେଜମାନେ ଶ୍ରୀରଙ୍ଗପତ୍ତନ ଅବରୋଧ କଲେ । ଟିପୁ ବୀରତ୍ୱର ସହିତ ଯୁଦ୍ଧକରି ଶେଷରେ ନିହତ ହେଲେ । ଅଧୁନିକ ମହୀଶୂରକୁ ୱେଲେସ୍‌ଲି ପୂର୍ବ ହିନ୍ଦୁରାଜାଙ୍କର ଜଣେ ବଂଶଧରଙ୍କୁ ଦେଇଥିଲେ । ଅବଶିଷ୍ଟ ରାଜ୍ୟ ନିଜାମ, ମରହଟ୍ଟା ଓ ଇଂରେଜମାନେ ବାଣ୍ଟି ନେଇଥିଲେ ।

**ଦ୍ୱିତୀୟ ମରହଟ୍ଟା ସମର** ଖ୍ରୀ: (୧୮୦୩—୧୮୦୫):—ପେଶବା ଦ୍ୱିତୀୟ ବାଜିରାଓ ସାମନ୍ତସନ୍ଧି ଗ୍ରହଣକରି ତାର ସର୍ତ୍ତମାନ ନ ପାଳିବାରୁ ୱେଲେସ୍‌ଲି ତାଙ୍କ ବିରୁଦ୍ଧରେ ଯୁଦ୍ଧକଲେ । ସିନ୍ଧିଆ ଓ ଭୋନ୍‌ସଲେ ପେଶବାଙ୍କ ସଙ୍ଗେ ମିଶିଥିଲେ । ଆସାଇଠାରେ ସିନ୍ଧିଆ ଓ ଭୋନ୍‌ସଲେଙ୍କର ମିଳିତ ସେନା ଇଂରେଜମାନଙ୍କଦ୍ୱାରା ପରାସ୍ତ ହେଲେ । ପୁନର୍ବାର ଭୋନ୍‌ସଲେଙ୍କ ସୈନ୍ୟମାନେ ଅରଗାଁଠାରେ ଓ ସିନ୍ଧିଆଙ୍କ ସୈନ୍ୟମାନେ ଉତ୍ତର ଭାରତରେ ପରାସ୍ତ ହେବାରୁ ଇଂରେଜମାନେ ଦିଲ୍ଲୀ ଓ ଆଗ୍ରା ଦଖଲ କଲେ । ଭୋନ୍‌ସଲେ ଖ୍ରୀ: ୧୮୦୩ ରେ ଇଂରେଜମାନଙ୍କ ସଙ୍ଗେ ସନ୍ଧି କଲେ । ସନ୍ଧି ଫଳରେ ଓଡ଼ିଶାର ମରହଟ୍ଟା ରାଜ୍ୟ

(ପୁରୀ, କଟକ, ବାଲେଶ୍ୱର ଜିଲ୍ଲା) ଇଂରେଜମାନେ ପାଇଲେ । ସିନ୍ଧିଆ ସନ୍ଧିକର ଗଙ୍ଗା ଯମୁନାର ମଧ୍ୟବର୍ତ୍ତୀ ଦୋଆବ, ବ୍ରୋଚ ଓ ଅହମ୍ମଦନଗର ଇଂରେଜମାନଙ୍କୁ ଦେଲେ । ଭୋନ୍‌ସଲା ଓ ସିନ୍ଧିଆ ସାମନ୍ତ ସନ୍ଧିରେ ଆବଦ୍ଧ ହେଲେ ଓ ପେଶବାଙ୍କ ସାମନ୍ତ ସନ୍ଧିକୁ ସ୍ୱୀକାର କଲେ । ସେମାନେ ନିଜରାଜ୍ୟରେ ଜଣେ ଲେଖାଏଁ ଇଂରେଜ ରେସିଡେଣ୍ଟ ରଖିଲେ । ହୋଲକାର ଶେଷରେ ଯୁଦ୍ଧକର ପରାସ୍ତ ହେଲେ ଓ ଭରତପୁର ଦୁର୍ଗରେ ଆଶ୍ରୟ ନେଲେ । ମରହଟ୍ଟାମାନଙ୍କ ମଧ୍ୟରେ ଏକତା ନଥିବାରୁ ସେମାନେ ପରାସ୍ତ ହୋଇ ସମାନ୍ତ ସନ୍ଧି ସ୍ୱୀକାର କଲେ ।

**ଇଂରେଜମାନଙ୍କର ଓଡ଼ିଶା ଅଧିକାର** :—ଓଡ଼ିଶା ରଘୁଜୀ ଭୋନ୍‌ସଲଙ୍କ ଅଧୀନରେ ଥିଲା । ମାନ୍ଦ୍ରାଜରୁ ବଙ୍ଗଳା ଯିବାବେଳେ ଇଂରେଜମାନଙ୍କୁ ମରହଟ୍ଟା ରାଜ୍ୟ ଓଡ଼ିଶା ଦେଇ ଯିବାକୁ ପଡୁଥିବାରୁ ଅସୁବିଧା ହେଉଥିଲା । ରଘୁଜୀ ଭୋନ୍‌ସଲଙ୍କର ଇଂରେଜମାନଙ୍କ ସଙ୍ଗେ ଯୁଦ୍ଧ ହେବାବେଳେ ସେ ଓଡ଼ିଶା ପ୍ରତି ଦୃଷ୍ଟି ଦେଇପାରି ନ ଥିଲେ । ତେଣୁ ଇଂରେଜମାନେ ଦକ୍ଷିଣରୁ ଦଳେ ଓ ଉତ୍ତରରୁ ଦୁଇ ଦଳ ସୈନ୍ୟ ନେଇ ଓଡ଼ିଶା ଅଧିକାର କରିବାକୁ ବାହାରିଲେ । ଦକ୍ଷିଣରୁ ଆସୁଥିବା ଇଂରେଜ ସୈନ୍ୟମାନେ ସମୁଦ୍ର କୂଳେ ଆସି କଷ୍ଟରେ ଚିଲିକା ମୁହାଣ ପାରହୋଇ ପୁରୀରେ ପହଞ୍ଚିଲେ । ଖୋର୍ଦ୍ଧାରାଜା ମୁକୁନ୍ଦ ଦେବ ଇଂରେଜମାନଙ୍କୁ ଅଭିବାଦନ କଲେ । ଇଂରେଜମାନେ ଜଗନ୍ନାଥ ମନ୍ଦିର ନିଜ ହାତକୁ ନେଇ କେତେକ ହିନ୍ଦୁ ସିପାହୀଙ୍କ ହାତରେ ଛାଡ଼ିଦେଇ କଟକ ଯାତ୍ରା କଲେ । ପିପିଲିଠାରେ ଅଳ୍ପ ମରହଟ୍ଟା ସୈନ୍ୟଙ୍କୁ ପରାସ୍ତ କରି ଇଂରେଜମାନେ ଲାଲବାଗ ବାଟେ କଟକରେ ପ୍ରବେଶ କଲେ । ଅତି ସାମାନ୍ୟ ପ୍ରତିରୋଧ ପରେ ଖ୍ରୀ: ୧୮୦୩ର ଅକ୍ଟୋବର ୧୪ ତାରିଖରେ ବାରବାଟୀ ଦୁର୍ଗ ଇଂରେଜମାନଙ୍କ ଦ୍ୱାରା ଅଧିକୃତ ହେଲା ।

ବଙ୍ଗଳାରୁ ଆସୁଥିବା ଦଳେ ସୈନ୍ୟ ଜାହାଜରେ ଆସି ବାଲେଶ୍ୱରରେ ଓହ୍ଲାଇ ବୁଢ଼ାବଳଙ୍ଗ ନଦୀକୂଳରେ ମରହଟ୍ଟା ସୈନ୍ୟମାନଙ୍କୁ ହଟାଇଲେ ଓ ସୋର ଅଧିକାର କଲେ । ଅନ୍ୟଦଳେ ସୈନ୍ୟ ବଙ୍ଗଳାରୁ ମେଦନୀପୁର ବାଟଦେଇ ଆସି କଟକରେ ପହଞ୍ଚିଲେ । କନିକା, କୁଜଙ୍ଗ ଓ ହରିଶପୁରର ରାଜାମାନେ ଇଂରେଜମାନଙ୍କୁ ବାଧାଦେଇ ପରାସ୍ତ ହେଲେ । ସମ୍ବଲପୁର, ପାଟଣା ପ୍ରଭୃତି ଇଂରେଜମାନେ ଦଖଲ କଲେ । ଖ୍ରୀ : ୧୮୦୩ରେ ରଘୁଜୀ ଭୋନ୍‌ସଲ ଇଂରେଜମାନଙ୍କ ସହିତ ସନ୍ଧି କରିବାରୁ ଓ ସର୍ବଶେଷ ମରହଟ୍ଟା ନେତ୍ର ପେଶବା ତାହା ସ୍ୱୀକାର କରିବାରୁ ଓଡ଼ିଶା ଆଇନ ଅନୁସାରେ ଇଂରେଜରାଜ୍ୟରେ ମିଶିଲା ।

**ଖୋର୍ଦ୍ଧା ଓ ମୁକୁନ୍ଦଦେବ** :—ଖୋର୍ଦ୍ଧା ରାଜା ମୁକୁନ୍ଦ ଦେବ ଭାବିଥିଲେ ଇଂରେଜମାନେ ତାଙ୍କୁ ସାହାଯ୍ୟ କରିବେ । ତା ପରବର୍ତ୍ତିରେ ଇଂରେଜମାନେ ପୁରୀ ଦେଉଳକୁ ନିଜ ହାତକୁ ନେଇ ତାଙ୍କୁ ଅପମାନ ଦେବାରୁ ଜନସାଧାରଣ ଅସନ୍ତୁଷ୍ଟ ହୋଇଥିଲେ ଓ ଖୋର୍ଦ୍ଧାର ପାଇକମାନେ ପିପିଲି ନିକଟରେ ଗୋଟିଏ ଗ୍ରାମ ଲୁଣ୍ଠନ କଲେ । ଇଂରେଜମାନେ ଖ୍ରୀ: ୧୮୦୪ରେ ମୁକୁନ୍ଦ ଦେବଙ୍କୁ ବନ୍ଦୀ କଲେ ଓ ଖୋର୍ଦ୍ଧାକୁ ଖାସମହାଲ କଲେ ।

ଡ଼ଏଲେସ୍‌ଲି ଯୁଦ୍ଧରେ ବହୁ ଖର୍ଚ୍ଚ ଓ କେତେକ ଅନ୍ୟାୟ କାର୍ଯ୍ୟ କରିଥିବାରୁ କମ୍ପାନୀ ତାଙ୍କୁ ଖ୍ରୀ: ୧୮୦୫ ରେ ବିଲାତ ଡକାଇ ନେଲେ । ସେତେବେଳକୁ ଭାରତରେ ଇଂରେଜ ରାଜ୍ୟ ସ୍ଥାପନ ଆଶା ତାଙ୍କର ପୂର୍ଣ୍ଣ ହୋଇଥିଲା ।

ଖ୍ରୀ: ୧୮୦୫ରେ କର୍ଣ୍ଣୱାଲିସ୍ ଓ ଖ୍ରୀ: ୧୮୦୫ ଠାରୁ ଖ୍ରୀ: ୧ ୦୭ ପର୍ଯ୍ୟନ୍ତ ସାର ଜର୍ଜ ବାର୍ଲୋ ବଡ଼ଲାଟ ହେଲେ । ବାର୍ଲୋଙ୍କ ସମୟରେ ମରହଟ୍ଟାମାନେ ଶକ୍ତିଶାଳୀ ହେଲେ ।

**ଲର୍ଡ଼ ମିଣ୍ଟୋ** ( ଖ୍ରୀ: ୧୮୦୭—ଖ୍ରୀ: ୧୮୧୩ ) :—ଫରାସୀ ଆକ୍ରମଣ ଆଶଙ୍କା କରି ଲର୍ଡ଼ ମିଣ୍ଟୋ ପଞ୍ଜାବର ରଣଜିତ ସିଂହ, ପାରସ୍ୟର ସାହ ଓ କାବୁଲର ଅମୀରଙ୍କ ସଙ୍ଗେ ସନ୍ଧିକରି ଉତ୍ତରପଶ୍ଚିମ ସୀମାନ୍ତକୁ ନିରାପଦ କରିଥିଲେ ।

ପଞ୍ଜାବରେ ଛୋଟ ଛୋଟ ଶିଖରାଜ୍ୟ ଥିଲା । **ରଣଜିତ୍ ସିଂହ** କାବୁଲର ଅମୀରଙ୍କୁ ପଞ୍ଜାବ ଆକ୍ରମଣ କରିବାକୁ ସାହାଯ୍ୟକରି ଲାହୋରର ଶାସନକର୍ତ୍ତା ନିଯୁକ୍ତ ହେଲେ । ପରେ ସେ ନିଜର ସ୍ୱାଧୀନତା ଘୋଷଣା କରି ଛୋଟ ଛୋଟ ଶିଖ ସର୍ଦ୍ଦାରମାନଙ୍କୁ ପରାସ୍ତ କରି ପଞ୍ଜାବରେ ଗୋଟିଏ ଶକ୍ତିଶାଳୀ ଶିଖରାଜ୍ୟ ପ୍ରତିଷ୍ଠା କଲେ । ସେ କାଶ୍ମୀର ଓ ପେଶାବାର ଅଧିକାର କଲେ । ତାଙ୍କ ରାଜ୍ୟ କାଶ୍ମୀରରୁ ମୁଲତାନ୍ ଓ ପେଶାବାରରୁ ଶତଦ୍ରୁ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ତାଙ୍କର ସୈନ୍ୟମାନେ ଶତଦ୍ରୁ ନଦୀର ପୂର୍ବପଟରେ ଥିବା ଶିଖରାଜ୍ୟମାନଙ୍କୁ ଆକ୍ରମଣ କରିବାରୁ ସେହି ଶିଖରାଜ୍ୟମାନେ ଲର୍ଡ଼ ମିଣ୍ଟୋଙ୍କୁ ସାହାଯ୍ୟ ମାଗିଲେ । ଲର୍ଡ଼ ମିଣ୍ଟୋ ଦୂତ ପଠାଇ ଖ୍ରୀ: ୧୮୦୯ରେ ରଣଜିତଙ୍କ ସଙ୍ଗେ ସନ୍ଧି କଲେ । ରଣଜିତ ଶତଦ୍ରୁ ନଦୀର ପୂର୍ବରେ ଥିବା ରାଜ୍ୟମାନ ଆକ୍ରମଣ ନ କରିବାପାଇଁ ରାଜି ହୋଇଥିଲେ ।



**ଲର୍ଡ଼ ହେଷ୍ଟିଂସ୍** ( ଖ୍ରୀ: ୧୮୧୩—ଖ୍ରୀ: ୧୮୨୩ ) :—ଖ୍ରୀ: ୧୮୧୩ରେ କମ୍ପାନୀକୁ ନୂଆ ସନନ୍ଦ ମିଳିଲା ଓ ଭାରତରେ କମ୍ପାନୀର ଏକଚାଟିଆ ବାଣିଜ୍ୟ ଅଧିକାର ଆଉ ରହିଲା ନାହିଁ ।

**ତୃତୀୟ ମରହଟ୍ଟା ସମର** (ଖ୍ରୀ: ୧୮୧୭—ଖ୍ରୀ: ୧୮୧୯):—ପେଶବା ଦ୍ୱିତୀୟ ବାଜୀରାଓ ସାମନ୍ତ ସନ୍ଧିରେ ଅସନ୍ତୁଷ୍ଟ ଥିଲେ ଓ ଇଂରେଜମାନଙ୍କ ବିରୁଦ୍ଧରେ ଅନ୍ୟ ମରହଟ୍ଟାଙ୍କ ସଙ୍ଗେ ମିଶି ଷଡ଼ଯନ୍ତ୍ର କରୁଥିଲେ। ହେଷ୍ଟିଙ୍ଗସ୍ ପୁନାଠାରେ ଅଉ ଗୋଟିଏ ସନ୍ଧି କରି ତାଙ୍କଠାରୁ କେତେକ ଦୁର୍ଗ ଓ ରାଜ୍ୟ ନେଇଗଲେ। ପେଶବା ଏଥିପାଇଁ ଇଂରେଜମାନଙ୍କ ସଙ୍ଗେ ବାରମ୍ବାର ଯୁଦ୍ଧକରି ଖ୍ରୀ: ୧୮୧୮ରେ ପରାସ୍ତ ହୋଇଥିଲେ। ହେଷ୍ଟିଙ୍ଗସ୍ ପେଶବା ପଦ ଉଠାଇ ଦେଇ ତାଙ୍କ ରାଜ୍ୟ ବମ୍ବେ ପ୍ରଦେଶରେ ମିଶାଇଲେ ଓ ଏକ କ୍ଷୁଦ୍ର ରାଜ୍ୟ ଶିବାଜୀଙ୍କ ବଂଶଧରଙ୍କୁ ଦେଇ ତାଙ୍କୁ ସାତାରାରେ ରାଜା କଲେ। ଭୋନ୍‌ସଲ୍ଲ 'ସୀତାବାଲ୍‌ଦି' ଯୁଦ୍ଧରେ ପରାସ୍ତ ହେବାରୁ ହେଷ୍ଟିଙ୍ଗସ୍ ନାଗପୁର ଓ ତାର ନିକଟବର୍ତ୍ତୀ ସ୍ଥାନ ରଘୁଜୀଙ୍କ ନାତିଙ୍କୁ ଦେଇ ଅବଶିଷ୍ଟ ରାଜ୍ୟ ଇଂରେଜ ରାଜ୍ୟରେ ମିଶାଇଲେ। ହୋଲ୍‌କାରମାନେ ମେହିଦପୁରଠାରେ ପରାସ୍ତ ହେବାରୁ ତାଙ୍କ ରାଜ୍ୟ ଇଂରେଜ ରାଜ୍ୟଭୁକ୍ତ ହେଲା ଓ ରାଜ୍ୟର କିଛି ଅଂଶ ନାବାଳକ ରାଜାଙ୍କୁ ଦିଆଗଲା। ଏହିପରି ମରହଟ୍ଟାମାନଙ୍କର ସବୁ ଶକ୍ତି ଲୋପ ପାଇଲା।

ହେଷ୍ଟିଙ୍ଗସ୍ ପିଣ୍ଡାରି ନାମକ ଏକ ଦସ୍ୟୁଦଳଙ୍କୁ ଦମନ କରିଥିଲେ। ସେ ନେପାଳର ରାଜାଙ୍କ ସହିତ ଯୁଦ୍ଧକରି ତାଙ୍କ ସହିତ ସନ୍ଧି କଲେ ଓ ମିତ୍ରତା ସ୍ଥାପନ କଲେ। ଖୋର୍ଦ୍ଧାର ପାଇକମାନଙ୍କ ନିଷ୍କର ଜମି ଉପରେ ଖଜଣା ବସିବାରୁ, ଲୋକଙ୍କୁ ଲୁଣଠିକସ ଦେବାକୁ ପଡ଼ିବାରୁ ଓ ବକ୍‌ସି ବିଦ୍ୟାଧରଙ୍କର ଜମିଦାରୀଖଣ୍ଡିକ ଇଂରେଜମାନେ ଛଡ଼ାଇ ନେବାରୁ ଖୋର୍ଦ୍ଧାର ପାଇକମାନେ ବିଦ୍ରୋହ କରିଥିଲେ। ବହୁ କଷ୍ଟରେ ଖୋର୍ଦ୍ଧାର ପାଇକବିଦ୍ରୋହ ଦମନ କରାଯାଇଥିଲା।

**ଲର୍ଡ ଆମ୍‌ହର୍ଷ୍ଟ** (ଖ୍ରୀ: ୧୮୨୩—ଖ୍ରୀ: ୧୮୨୮):—ଏହାଙ୍କ ସମୟରେ 'ପ୍ରଥମ ବ୍ରହ୍ମସମର' (୧୮୨୪—ଖ୍ରୀ: ୧୮୨୬) ହୋଇ

ଆସାମ, ଆରାକାନ ଓ ଟେନାସରିମ୍ ଇଂରେଜ ରାଜ୍ୟରେ ମିଶିଥିଲା । ଖ୍ରୀ: ୧୮୨୬ ରେ ଇଂରେଜମାନେ 'ଭରତପୁର ଦୁର୍ଗ' ଦଖଲ କରିଥିଲେ ।

**ଲର୍ଡ ଉଇଲିୟମ୍ ବେଣ୍ଟିକ୍** (ଖ୍ରୀ:୧୮୨୮—ଖ୍ରୀ:୧୮୩୫) :— ତାଙ୍କ ସମୟକୁ ଇଂରେଜ ରାଜ୍ୟ ଭାରତରେ ପ୍ରତିଷ୍ଠିତ ହୋଇଥିବାରୁ ସେ ଭାରତରେ ଲୋକହିତକର କାର୍ଯ୍ୟପାଇଁ ଦୃଷ୍ଟି ଦେଇଥିଲେ ।

**ସମାଜ ସଂସ୍କାର** :—(୧) ସତୀଦାହ ପ୍ରଥା :—କୌଣସି ହିନ୍ଦୁ ମରିଗଲେ ତାର ସ୍ତ୍ରୀ ସ୍ୱାମୀର ଶବାଗ୍ନିରେ ପୋଡ଼ିହୋଇ ମରିବାକୁ 'ସତୀଦାହ' କହନ୍ତି । ଏହି ସତୀଦାହ ପ୍ରଥା ବହୁଦିନରୁ ଭାରତରେ ପ୍ରଚଳିତ ଥିଲା । ଅନେକ ସମୟରେ ସ୍ତ୍ରୀର ଇଚ୍ଛା ନ ଥିଲେ ମଧ୍ୟ ସେ ବାଧ୍ୟହୋଇ ପୋଡ଼ିହୋଇ ମରୁଥିଲା । ଉଇଲିୟମ୍ ବେଣ୍ଟିକ୍ ଆଇନଦ୍ୱାରା ଏହି ପ୍ରଥା ଉଠାଇଦେଲେ ।

**(୨) ନରବଳି** :— ଓଡ଼ିଶାର ମାଳ ଅଞ୍ଚଳରେ କନ୍ଧମାନେ ଧାନକ୍ଷେତ ଭଲ ହେବାପାଇଁ ନରବଳି ଦେଉଥିଲେ । ବେଣ୍ଟିକ୍ ଏହା ବନ୍ଦକରି-ଦେଇଥିଲେ ।

**(୩) ଶିଶୁହତ୍ୟା** :—ପଞ୍ଜାବ, ରାଜପୁତାନା ପ୍ରଭୃତି ଅଞ୍ଚଳରେ କନ୍ୟା ଜାତହେବାକ୍ଷଣି ଲୋକମାନେ ସେହି କନ୍ୟାକୁ ହତ୍ୟା କରୁଥିଲେ । ବେଣ୍ଟିକ୍ ଏହି ନୃଶଂସ ପ୍ରଥାକୁ ବନ୍ଦ କରିଦେଲେ ।

**ଠଗ ଦମନ**:—ମଧ୍ୟଭାରତର ଅରଣ୍ୟମାନଙ୍କରେ ଠଗ ନାମରେ ଦସ୍ୟୁମାନେ ଦଳ ଦଳ ହୋଇ ରହୁଥିଲେ । ସେମାନେ ବାଟୋଇମାନଙ୍କୁ



ଲୁଟାଇଦେଇ ସେମାନଙ୍କ ଉଣ୍ଟିଶପି ମାରି ଦେଉଥିଲେ ଓ ସେମାନଙ୍କର ଧନ ଲୁଣ୍ଠନ କରୁଥିଲେ । ବହୁ କଷ୍ଟରେ ବେଣ୍ଟିକ୍ ସେମାନଙ୍କୁ ଧରି କଠିନ ଦଣ୍ଡ ଦେଲେ ଓ ବନ୍ଦୀ କଲେ । ଏଥିରୁ କେତେକ ବନ୍ଦୀ ଶିକ୍ଷା ପାଇ ଭଲଲୋକ ହୋଇଥିଲେ ।

**ଶିକ୍ଷା ସଂସ୍କାର :—** ସଂସ୍କୃତ, ଆରବୀ ଓ ପାର୍ସି ଭାଷାରେ ଭାରତୀୟମାନଙ୍କୁ ଶିକ୍ଷା ଦିଆଯାଉଥିଲା । ଡାଙ୍କନ୍‌ସିଲର ପରାମର୍ଶ ଅନୁସାରେ ବେଣ୍ଟିକ୍ ଦେଶୀୟ ଭାଷା ପରିବର୍ତ୍ତିରେ ଇଂରେଜ ଭାଷା ଚଳାଇଥିଲେ । ଇଂରେଜ ଶିକ୍ଷାଦ୍ୱାରା ଭାରତୀୟମାନଙ୍କ ମଧ୍ୟରେ ଏକତା ଆସିଲା ଓ ପାଶ୍ଚାତ୍ୟ ବିଜ୍ଞାନ ଓ ସଭ୍ୟତା ପ୍ରସାରିତ ହେଲା ।

**ଶାସନ ସଂସ୍କାର :—** କର୍ଣ୍ଣୱାଲିସ୍‌ଙ୍କ ଦ୍ୱାରା ସ୍ଥାପିତ ପ୍ରାଦେଶିକ ବିଚାରାଳୟମାନ ବେଣ୍ଟିକ୍ ଉଠାଇ ଦେଇଥିଲେ । ଜିଲ୍ଲା ଜଜ୍‌ମାନଙ୍କ ହାତରୁ ଦେୱାନୀ ମକଦ୍ଦମା ବିଚାର କ୍ଷମତା କାଢ଼ିନେଇ ତାହା ଜିଲ୍ଲାର କଲେକ୍ଟରମାନଙ୍କ ହାତରେ ଦେଲେ । ଜିଲ୍ଲା ଜଜ୍‌ମାନେ ସବୁପ୍ରକାର ଫୌଜଦାରୀ ମକଦ୍ଦମା ବୁଝିବାର କ୍ଷମତା ପାଇଲେ । ଯୋଗ୍ୟ ଭାରତୀୟମାନେ ବଡ଼ ବଡ଼ ଚାକିରି ପାଇଲେ । ଭାରତୀୟମାନଙ୍କ ସୁବିଧାପାଇଁ ସେ କଚେରୀମାନଙ୍କରେ ପାର୍ସୀଭାଷା ବଦଳରେ ପ୍ରାଦେଶିକ ଭାଷାମାନ ଚଳାଇଲେ ।

**ରାଜ୍ୟ ବିସ୍ତାର** :—ସେ କାଚ୍ଛାର, କୁର୍ଗ ଓ ମଣିପୁର ଇଂରେଜ ରାଜ୍ୟରେ ମିଶାଇଲେ ଓ ରୁଷ ଆକ୍ରମଣ ଆଶଙ୍କାରେ ସିନ୍ଧୁର ଅମୀର ଓ ରଣଜିତ ସିଂହଙ୍କ ସଙ୍ଗେ ସନ୍ଧି କରିଥିଲେ ।

**କମ୍ପାନୀଙ୍କ ନୂଆ ସନନ୍ଦ** :—ଖ୍ରୀ: ୧୮୩୩ ରେ ପୁଣି କମ୍ପାନୀ କୋଡ଼ିଏ ବର୍ଷପାଇଁ ନୂଆ ସନନ୍ଦ ପାଇଲେ । ଏହି ସନନ୍ଦ ଅନୁସାରେ ଭାରତର 'ଗଭର୍ଣ୍ଣର ଜେନେରାଲ୍' ପଦ ସୃଷ୍ଟି ହେଲା । ମାନ୍ଦ୍ରାଜ ଓ ବମ୍ବେର ଗଭର୍ଣ୍ଣରମାନେ ଭାରତର ଗଭର୍ଣ୍ଣରଜେନେରାଲଙ୍କର ପୂର୍ଣ୍ଣ ଅଧୀନ ହେଲେ । କମ୍ପାନୀ ଚୀନ ଦେଶରେ ବାଣିଜ୍ୟ କରିବା ସୁବିଧା ହରାଇଲେ । ଯୋଗ୍ୟତା ଅନୁସାରେ ଭାରତୀୟମାନେ ଜାତିଧର୍ମବର୍ଣ୍ଣ ନିର୍ବିଶେଷରେ ବଡ଼ ବଡ଼ ଚାକିରି ପାଇବାପାଇଁ ସୁବିଧା ପାଇଲେ ।

**ସାର୍ ଚାର୍ଲସ୍ ମେଟ୍‌କାଫ୍** (ଖ୍ରୀ: ୧୮୩୫—: ୧୮୩୬):—ତାଙ୍କ ସମୟରେ ଭାରତୀୟ ଖବରକାଗଜମାନଙ୍କୁ କେତେକ ସୁବିଧା ମିଳିଥିଲା ।

**ଲର୍ଡ଼ ଅକ୍‌ଲାଣ୍ଡ** ( ଖ୍ରୀ: ୧୮୩୬—ଖ୍ରୀ: ୧୮୪୨ ) :—ତାଙ୍କ ସମୟରେ କାବୁଲର ସିଂହାସନ ପାଇଁ ଦୋସ୍ତ ମହମ୍ମଦ ଓ ଶାହ ସୁଜାଙ୍କ ମଧ୍ୟରେ ବାରମ୍ବାର ବିବାଦ ହୋଇଥିଲା । ଇଂରେଜମାନେ ଶାହ ସୁଜାଙ୍କୁ ସାହାଯ୍ୟ କରି ଦୋସ୍ତ ମହମ୍ମଦଙ୍କ ବିରୁଦ୍ଧରେ ଯୁଦ୍ଧ କଲେ । ଏହାକୁ 'ପ୍ରଥମ ଅଫ୍‌ଗାନ୍ ସମର' କହନ୍ତି । ଶେଷରେ ଏଲେନ୍‌ବରୋଙ୍କ ସମୟରେ ଶାହ ସୁଜା ନିହତ ହେବାରୁ ଇଂରେଜମାନେ ବାଧ୍ୟହୋଇ ଦୋସ୍ତ ମହମ୍ମଦଙ୍କୁ କାବୁଲର ଅମୀର କଲେ ।

**ଲର୍ଡ଼ ଏଲେନ୍‌ବରୋ** ( ଖ୍ରୀ: ୧୮୪୨—ଖ୍ରୀ:୧୮୪୪ ) :—ତାଙ୍କ ସମୟରେ କାବୁଲ ସିଂହାସନ ବିବାଦ ମେଣ୍ଟିଥିଲା । ସେ ସିନ୍ଧୁ-

ଦେଶକୁ ଇଂରେଜ ରାଜ୍ୟରେ ମିଶାଇଲେ ଓ ଗୋଆଲିଅର ରାଜ୍ୟକୁ ଇଂରେଜମାନଙ୍କର ଆଶ୍ରିତ ରାଜ୍ୟ କଲେ ।

**ଲର୍ଡ଼ ହାଡ଼ିଞ୍ଜ୍** (ଖ୍ରୀ: ୧୮୪୪—ଖ୍ରୀ: ୧୮୪୮) :—'**ପ୍ରଥମ** ଶିଖ ସମର' ତାଙ୍କ ଅମଳର ପ୍ରଧାନ ଘଟଣା ।

**ପ୍ରଥମ ଶିଖ ସମର** (ଖ୍ରୀ: ୧୮୪୫—ଖ୍ରୀ: ୧୮୪୬) :—ରଣଜିତ **ସିଂହ** ବଞ୍ଚିଥିବା ପର୍ଯ୍ୟନ୍ତ ଶିଖମାନଙ୍କୁ ଆୟତ୍ତରେ ରଖିଥିଲେ । ସେ ଖ୍ରୀ: ୧୮୩୯ ରେ ମରିଯିବାରୁ ନାବାଳକ ରାଜା ଦୁଲିପ **ସିଂହ** ଓ ରାଜମାତା ଝିନ୍ଦନ ଶିଖମାନଙ୍କୁ ଆୟତ୍ତ କରି ରଖି ପାରିଲେ ନାହିଁ । ଶିଖମାନେ ଶତଦ୍ରୁ ନଦୀ ପାରହୋଇ ଇଂରେଜରାଜ୍ୟ ଆକ୍ରମଣ କଲେ । ଇଂରେଜ ଓ ଶିଖମାନଙ୍କ ମଧ୍ୟରେ 'ମୁଦକି', 'ଫିରୋଜ ସାହ', 'ଅଲିଓଆଲ' ଓ 'ସୋବ୍ରାଓ' ନାମକ ଚାରୋଟି ସ୍ଥାନରେ ଭୀଷଣ ଯୁଦ୍ଧ ହେଲା । ଶିଖମାନେ ବୀରତ୍ୱର ସହିତ ଯୁଦ୍ଧ କଲେ ମଧ୍ୟ ପରାସ୍ତ ହୋଇ ଲାହୋରଠାରେ ସନ୍ଧି କଲେ । ସନ୍ଧିଫଳରେ ଇଂରେଜମାନେ ଶତଦ୍ରୁ ଓ ବିପାସା ନଦୀ ମଧ୍ୟରେ ଥିବା ଜଳନ୍ଧର ଦୋଆବ ଓ ଯୁଦ୍ଧଖର୍ଚ୍ଚ ପାଇଁ କାଶ୍ମୀର ରାଜ୍ୟ ପାଇଲେ । କୋଟିଏ ଟଙ୍କାରେ ଇଂରେଜମାନେ ଗୋଲପ ସିଂହଙ୍କୁ କାଶ୍ମୀର ବିକ୍ରିଦେବାରୁ ସେ କାଶ୍ମୀରରେ ସ୍ୱାଧୀନ ହିନ୍ଦୁରାଜା ହୋଇ ରହିଲେ । ଦୁଲିପ **ସିଂହ** ରାଜା ହେଲେ । ଶିଖମାନଙ୍କର ସୈନ୍ୟସଂଖ୍ୟା କମାଇ ଦିଆହେଲା ; ପଞ୍ଜାବରେ ଦଳେ ଇଂରେଜସୈନ୍ୟ ଓ ଜଣେ ରେସିଡେଣ୍ଟ ରହିଲେ ।

**ଲର୍ଡ଼ ଡାଲହାଉସୀ** (ଖ୍ରୀ: ୧୮୪୮—ଖ୍ରୀ: ୧୮୫୬) :—ସେ ଜଣେ ଚତୁର ଓ କାର୍ଯ୍ୟଦକ୍ଷ ଲୋକ ଥିଲେ । ଭାରତରେ ବ୍ରିଟିଶ୍-ସାମ୍ରାଜ୍ୟ ବିସ୍ତାର କରିବା ସଙ୍ଗେ ସଙ୍ଗେ ସେ ଅନେକ ଲୋକହିତକର କାର୍ଯ୍ୟ କରିଥିଲେ ।

**ଦ୍ୱିତୀୟ ଶିଖ୍ ସମର** (ଖ୍ରୀ: ୧୮୪୮—ଖ୍ରୀ: ୧୮୪୯) :—ପ୍ରଥମ ଶିଖ ସମରରେ ଶିଖମାନଙ୍କର ଶକ୍ତି ନଷ୍ଟ ହୋଇ ନଥିଲା । ପଞ୍ଜାବରେ ଇଂରେଜମାନେ ଆଧିପତ୍ୟ ବିସ୍ତାର କରି ରାଜମାତାଙ୍କ ପ୍ରତି ଦୁର୍ବ୍ୟବହାର କରିବାରୁ ଶିଖମାନେ ଅସନ୍ତୁଷ୍ଟ ହେଲେ । ମୂଲତାନର ଶାସନକର୍ତ୍ତା ମୂଲରାଜ ଲାହୋରର ଶିଖ ସରକାରଙ୍କୁ କର ନ ଦେବାରୁ ଲାହୋରର ଶିଖ ସରକାରଙ୍କ ତରଫରୁ ଇଂରେଜମାନେ ତାଙ୍କୁ ଟଙ୍କା ମାଗିଲେ । ତେଣୁ ସେ ଇସ୍ତଫା ଦେଇ ବିଦ୍ରୋହ କରି ଦୁଇଜଣ ଇଂରେଜ କର୍ମଚାରୀଙ୍କୁ ହତ୍ୟା କଲେ । ପଞ୍ଜାବରେ ବିଦ୍ରୋହ ଲାଗିବାରୁ ଲର୍ଡ ଡାଲ୍‌ହାଉସି ଇଂରେଜ ସୈନ୍ୟ ପଠାଇ ଚିଲିଆନୱାଲା ଓ ଗୁଜରାଟ୍ ଯୁଦ୍ଧରେ ଶିଖମାନଙ୍କୁ ପରାସ୍ତ କଲେ । ଦୁଲିପ ସିଂହାସନ ହରାଇଲେ । ସେ ଓ ହିଦନ ବୃତ୍ତି ପାଇ ବିଲାତରେ ରହିଲେ ।



**ଦ୍ୱିତୀୟ ବ୍ରହ୍ମ ସମର** :—ଖ୍ରୀ: ୧୮୫୨ ରେ ବ୍ରହ୍ମଦେଶର ଲୋକମାନେ ରେଙ୍ଗୁନଠାରେ ଇଂରେଜ ବଣିକମାନଙ୍କ ଉପରେ ବାରମ୍ବାର ଅତ୍ୟାଚାର କରିବାରୁ ଇଂରେଜ ବଣିକମାନେ ଡାଲ୍‌ହାଉସୀଙ୍କ ନିକଟରେ ଅଭିଯୋଗ ଆଣିଲେ । ଡାଲ୍‌ହାଉସୀ ବ୍ରହ୍ମରାଜଙ୍କୁ ଏହାର ପ୍ରତିକାର ପାଇଁ ଜଣାଇଲେ । ବ୍ରହ୍ମରାଜ ପ୍ରତିକାର ନ କରିବାରୁ ଇଂରେଜମାନେ ଖ୍ରୀ: ୧୮୫୨ ରେ ବ୍ରହ୍ମଦେଶ ଆକ୍ରମଣ କରି ରେଙ୍ଗୁନ ଓ ପ୍ରୋମ ଅଧିକାର କଲେ । ବ୍ରହ୍ମରାଜା ସନ୍ଧି ନ କରିବାରୁ ଡାଲ୍‌ହାଉସୀ ପେଗୁ ଓ ବ୍ରହ୍ମଦେଶର ନିମ୍ନାଞ୍ଚଳ ଇଂରେଜ ରାଜ୍ୟରେ ମିଶାଇଲେ । ଏହାଦ୍ୱାରା ଇଂରେଜମାନଙ୍କର ବାଣିଜ୍ୟରେ ସୁବିଧା ହେଲା ଓ ଭାରତର ପୂର୍ବସୀମା ନିରାପଦ ହେଲା ।

**ଅନ୍ୟାନ୍ୟ ରାଜ୍ୟ ଅଧିକାର** :—ଡାଲ୍‌ହାଉସୀ ଭାବୁଥିଲେ ଯେ ଦେଶୀୟ ରାଜ୍ୟଗୁଡ଼ିକ ଇଂରେଜ ଶାସନାଧୀନରେ ବେଶୀ ଉନ୍ନତି କରିବେ । ତେଣୁ ସେ ନାନା ଉପାୟରେ ଦେଶୀୟ ରାଜ୍ୟମାନଙ୍କୁ ଇଂରେଜ ଶାସନାଧୀନ କରିଥିଲେ । ତାଙ୍କର 'ରାଜ୍ୟସ୍ୱତ୍ୱ ଲୋପ ନୀତି' ଅନୁସାରେ ଅପୁତ୍ରିକ ରାଜା ପୋଷ୍ୟପୁତ୍ର ଗ୍ରହଣ କରିପାରୁ ନଥିଲେ ଏବଂ ସେମାନଙ୍କ ଅନ୍ତେ ସେମାନଙ୍କ ରାଜ୍ୟ ଇଂରେଜ ରାଜ୍ୟଭୁକ୍ତ ହେଉଥିଲା । ତେଣୁ ସାତାରା, ଝାନ୍‌ସି ପ୍ରଭୃତି ଇଂରେଜ ରାଜ୍ୟଭୁକ୍ତ ହେଲା । ଅଯୋଧ୍ୟାର ନବାବ ସୁଶାସନ କରୁ ନଥିବାରୁ ଖ୍ରୀ: ୧୮୫୬ ରେ ତାଙ୍କ ରାଜ୍ୟ ଇଂରେଜ ରାଜ୍ୟରେ ମିଶିଲା । ହାଇଦ୍ରାବାଦର ନିଜାମ ତାଙ୍କ ରାଜ୍ୟରେ ଥିବା ଇଂରେଜ ସୈନ୍ୟଙ୍କର ଖର୍ଚ୍ଚପାଇଁ ବେରାର ଇଂରେଜମାନଙ୍କୁ ଛାଡ଼ିଦେଲେ । ତାଞ୍ଜୋର ଓ କର୍ଣ୍ଣାଟର ନବାବ ମରିଯିବା ପରେ ଡାଲ୍‌ହାଉସୀ ତାଙ୍କର ବଂଶଧରମାନଙ୍କର ବୃତ୍ତି ବନ୍ଦ କରିଥିଲେ । ପେଶବା ବାଜୀରାଓ ଅପୁତ୍ରିକ ହୋଇ ମରିଯିବାରୁ ତାଙ୍କ ପୋଷ୍ୟପୁତ୍ର ନାନାସାହେବଙ୍କୁ ବୃତ୍ତି ଦିଆଗଲା ନାହିଁ ।

**ଲୋକହିତକର କାର୍ଯ୍ୟ** :—ସେ ଭାରତର ରାସ୍ତା, ଘାଟ ପ୍ରଭୃତିର କାର୍ଯ୍ୟ ଦେଖିବାପାଇଁ ପୂର୍ତ୍ତ ବିଭାଗ ସୃଷ୍ଟି କରିଥିଲେ । ତାଙ୍କ ଅମଳରେ ଗଙ୍ଗା କେନାଲ୍ ଖୋଲା ହେଲା; ଭାରତରେ ରେଲରାସ୍ତା ତିଆରି ହେଲା; ଡାକଘରମାନ ବସିଲା ଓ ଦୁଇ ପଇସିଆ ପୋଷ୍ଟକାର୍ଡ ଚଳିଲା, ଟେଲିଗ୍ରାଫ୍ ଓ ଟେଲିଫୋନ୍ ଲାଇନ୍‌ମାନ ସ୍ଥାପିତ ହେଲା; ଜାହାଜରେ ବିଦେଶକୁ ଯିବାର ସୁବନ୍ଦୋବସ୍ତ ହେଲା; ଶିକ୍ଷା ବିଭାଗ ଗୋଟିଏ ସ୍ୱତନ୍ତ୍ର ବିଭାଗ ହେଲା ଓ ସ୍ତ୍ରୀ ଶିକ୍ଷାର ଉନ୍ନତିପାଇଁ ବେଥୁନ୍ କଲେଜ ସ୍ଥାପିତ ହେଲା ଓ ବିଶ୍ୱବିଦ୍ୟାଳୟମାନ ବସିବାର ପ୍ରସ୍ତାବ ହେଲା । କୌଣସି ଲୋକ ଅନ୍ୟ ଧର୍ମ ଗ୍ରହଣ କଲେ ପୈତୃକ ସମ୍ପତ୍ତି ପାଇବାର ନିୟମ ହେଲା ।

ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ପରାମର୍ଶରେ ଆଇନଦ୍ୱାରା ବିଧବାବିବାହ ପ୍ରଚଳିତ ହେଲା ।

**କମ୍ପାନୀର ନୂଆ ସନନ୍ଦ :—** ଖ୍ରୀ: ୧୮୫୩ ରେ କମ୍ପାନୀ ପୁଣି ନୂଆ ସନନ୍ଦ ପାଇଲେ । ଉଚ୍ଚ ଚାକିରୀ ପାଇଁ 'ସିଭିଲ ସର୍ଭିସ୍' ପରୀକ୍ଷାର ବ୍ୟବସ୍ଥା ହେଲା ।

**ଲର୍ଡ କ୍ୟାନିଙ୍ଗ୍ (ଖ୍ରୀ: ୧୮୫୬—ଖ୍ରୀ: ୧୮୫୮) :—** କ୍ୟାନିଙ୍ଗ୍ ଦୟାଳୁ ଓ ଶାନ୍ତିପ୍ରିୟ ଥିଲେ । ତାଙ୍କ ସମୟରେ ଖ୍ରୀ: ୧୮୫୭ ରେ କଲିକତା, ବମ୍ବେ ଓ ମାନ୍ଦ୍ରାଜରେ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଥିଲା । ସେହି ବର୍ଷ ଭାରତୀୟ ସିପାହୀମାନେ ବିଦ୍ରୋହ କରିବାରୁ ଗଠନମୂଳକ କାର୍ଯ୍ୟମାନ ବନ୍ଦ ରହିଲା ।

**ସିପାହୀ ବିଦ୍ରୋହର କାରଣ :—** ଡାଲ୍‌ହାଉସୀଙ୍କ ରାଜ୍ୟସ୍ୱତ୍ୱ ଲୋପ ନୀତି ଫଳରେ ସାତାରା ଓ ଝାନ୍ସି ପ୍ରଭୃତି କେତେକ ରାଜ୍ୟ ଓ କୁଶାସନ ଫଳରେ ଅଯୋଧ୍ୟା ଇଂରେଜ ରାଜ୍ୟରେ ମିଶିଲା । କେତେକ ରଜା ମରିଯିବା ପରେ ସେମାନଙ୍କ ବୃତ୍ତି ଆଉ ସେମାନଙ୍କ ବଂଶଧରମାନଙ୍କୁ ମିଳିଲା ନାହିଁ । ଯେଉଁମାନଙ୍କର ରାଜ୍ୟ ଚାଲିଗଲା ସେମାନଙ୍କର ଆତ୍ମୀୟମାନେ ଓ ବୃତ୍ତି ହରାଇଥିବା ଲୋକମାନେ ଅସନ୍ତୁଷ୍ଟ ହୋଇ ଇଂରେଜମାନଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କଲେ । ସତୀଦାହ ପ୍ରଥା ଉଠିଯିବାରୁ ଓ ବିଧବା ବିବାହ ପ୍ରଥା ଚଳିବାରୁ ରକ୍ଷଣଶୀଳ ଲୋକମାନେ ଅସନ୍ତୁଷ୍ଟ ହେଲେ । ଇଂରେଜି ଶିକ୍ଷା ବିସ୍ତାର, ରେଲ୍‌ରାସ୍ତା ଓ ଡାକତାର ପ୍ରଚଳିତ

ହେବାରୁ ଭାରତୀୟମାନେ ସନ୍ଦେହ କଲେ । କମ୍ପାନୀ ସେମାନଙ୍କୁ ଖ୍ରୀଷ୍ଟିୟାନ୍ କରିଦେବେ ଓ ଭାରତକୁ ବିଲାତରେ ପରିଣତ କରିବେ । ପାଦ୍ରୀମାନେ ଖ୍ରୀଷ୍ଟଧର୍ମ ପ୍ରଚାର କଲାବେଳେ ହିନ୍ଦୁଧର୍ମକୁ ନିନ୍ଦା କରୁଥିବାରୁ ଲୋକଙ୍କର ଏହି ଆଶଙ୍କା ଅଧିକ ବଢ଼ି ଯାଇଥିଲା । ଭାରତୀୟମାନେ ଯୋଗ୍ୟତା ଅନୁସାରେ ଉଚ୍ଚ ରାଜକାର୍ଯ୍ୟମାନ ପାଇବାର ବ୍ୟବସ୍ଥା ଥିଲେ ମଧ୍ୟ ସେମାନେ ପ୍ରକୃତ ଶାସନକ୍ଷେତ୍ରରେ ତାହା ପାଇ ପାରୁ ନ ଥିଲେ । ସେଥିପାଇଁ ଭାରତୀୟମାନେ ଅସନ୍ତୁଷ୍ଟ ଥିଲେ । ଜାହାଜରେ ଚଢ଼ି ବିଦେଶ ଗଲେ ଧର୍ମ ନଷ୍ଟ ହୁଏ ବୋଲି ହିନ୍ଦୁମାନଙ୍କର ଧାରଣା ଥିଲା । ଯଦି କୌଣସି ସିପାହୀ ଜାହାଜରେ ଚଢ଼ି ବିଦେଶକୁ ଯିବାକୁ ମନା କରିବ ତାର ଚାକିରି ଯିବ ବୋଲି ଏହି ସମୟରେ ନିୟମ ହୋଇଥିଲା । ଏଥିରେ ହିନ୍ଦୁ ସିପାହୀମାନେ ଅସନ୍ତୁଷ୍ଟ ହୋଇଥିଲେ । ସିପାହୀମାନେ ବ୍ୟବହାର କରିବାପାଇଁ ଏକପ୍ରକାର ନୂଆ ବନ୍ଧୁକ ଆଣା ହୋଇଥିଲା । ଏହି ବନ୍ଧୁକର ଟୋଟାକୁ ଦାନ୍ତରେ ଛିଣ୍ଡାଇବାକୁ ପଡ଼ୁଥିଲା । ସେହି ଟୋଟାମାନଙ୍କରେ ଗୋରୁ ଓ ଘୁଷୁରି ଚର୍ବି ବୋଳା ହୋଇଅଛି ବୋଲି ହିନ୍ଦୁ ଓ ମୁସଲମାନ୍ ସିପାହୀଙ୍କର ଧାରଣା ଜନ୍ମିଲା । ଜାତି ଯିବା ଭୟରେ ସେମାନେ ଉତ୍ତେଜିତ ହୋଇ ବିଦ୍ରୋହ ଆରମ୍ଭ କଲେ ।

**ବିଦ୍ରୋହ ବିସ୍ତାର** :—ଏହି ବିଦ୍ରୋହ କଲିକତା ନିକଟରେ ଥିବା ବାରାକ୍‌ପୁରରେ ପ୍ରଥମେ ଦେଖାଗଲା । କ୍ରମେ ବିଦ୍ରୋହ ମିରଟ୍, ଲକ୍ଷ୍ନୌ, ଦିଲ୍ଲୀ, କାନପୁର, ଝାନ୍ସି, ଏଲାହାବାଦ ପ୍ରଭୃତି ସ୍ଥାନମାନଙ୍କରେ ବ୍ୟାପିଗଲା । ବିଦ୍ରୋହୀ ସିପାହୀମାନେ ଜେଲଖାନା ଭାଙ୍ଗି ବନ୍ଦୀମାନଙ୍କୁ ମୁକ୍ତ କଲେ; ଇଉରୋପୀୟମାନଙ୍କର ଘରଦ୍ୱାର ପୋଡ଼ି ପକାଇଲେ ଓ ସେମାନଙ୍କୁ ନିର୍ଦ୍ଦୟଭାବରେ ହତ୍ୟାକଲେ । ଦାକ୍ଷିଣାତ୍ୟ ଓ ପଞ୍ଜାବର ସିପାହୀମାନେ ଏଥିରେ ଯୋଗ ଦେଇ ନ ଥିଲେ । ସିପାହୀମାନଙ୍କ ଛଡ଼ା ଅଯୋଧ୍ୟା ଓ ବୁନ୍ଦେଲଖଣ୍ଡର ସାଧାରଣ ଲୋକେ ଏହି ବିଦ୍ରୋହରେ ଯୋଗ ଦେଇଥିଲେ ।

ବିଦ୍ରୋହୀମାନେ ଦିଲ୍ଲୀର ନାମ ମାତ୍ର ସମ୍ରାଟ୍ ବାହାଦୂରସାହଙ୍କୁ ଭାରତର ସମ୍ରାଟ୍ ବୋଲି ଘୋଷଣା କଲେ । ନାନାସାହେବ, ତାନ୍ତିଆଟୋପି, ବାହାଦୂରସାହ, ଅଯୋଧ୍ୟାର ବେଗମ୍, ଝାନ୍ସିର ରାଣୀ ଲକ୍ଷ୍ମୀବାଈ ଓ ଜଗଦୀଶପୁରର କୁଁୟର ସିଂହ ଏହି ବିଦ୍ରୋହୀମାନଙ୍କର ନେତା ଥିଲେ ।

**ବିଦ୍ରୋହ ଦମନ** :—ପଞ୍ଜାବ ଓ ଦାକ୍ଷିଣାତ୍ୟରେ ବିଦ୍ରୋହର ଚିହ୍ନ ନ ଥିଲା । ନେପାଳ, ସିନ୍ଧିଆ ଓ ପାଟିଆଲାର ରାଜା, ଶିଖ ଓ ଗୁର୍ଖା ସୈନ୍ୟମାନେ ବିଦ୍ରୋହ ଦମନ କରିବାରେ କ୍ୟାନିଙ୍ଗଙ୍କୁ ବହୁତ ସାହାଯ୍ୟ କରିଥିଲେ । ନାନାସାହେବ ପରାସ୍ତ ହୋଇ ପଳାଇଲେ; ଲକ୍ଷ୍ମୀବାଈ ଯୁଦ୍ଧରେ ନିହତ ହେଲେ; ମୋଗଲ୍ ସମ୍ରାଟ୍ ବନ୍ଦୀ ହୋଇ ରେଙ୍ଗୁନକୁ ପଠାହେଲେ । ତାନ୍ତିଆ ଟୋପି ପଳାଇ ଯାଉଥାଉ ଧରାପଡ଼ି ଫାଶି ପାଇଲେ । କ୍ରମେ ବିଦ୍ରୋହ ଶାନ୍ତ ହେଲା । ସିପାହୀମାନଙ୍କ ମଧ୍ୟରେ ଏକତା ଓ ଶୃଙ୍ଖଳା ନ ଥିବାରୁ ସେମାନେ ପରାସ୍ତ ହୋଇଥିଲେ ।

**ବିଦ୍ରୋହର ଫଳ** :—ସିପାହୀ ବିଦ୍ରୋହ ଫଳରେ ଭାରତ ଇତିହାସରେ ଘୋର ପରିବର୍ତ୍ତନ ଘଟିଥିଲା । ବ୍ରିଟିଶ ପାର୍ଲିଅମେଣ୍ଟ କମ୍ପାନୀ ହାତରୁ ଭାରତ ଶାସନଭାର ଛଡ଼ାଇ ନେଲେ । ଖ୍ରୀ: ୧୮୫୮ ରେ ଭାରତ ଶାସନ ଆଇନ ଗଢ଼ାହେଲା । ସେହି ଆଇନ ଅନୁସାରେ ବ୍ରିଟେନର ରାଣୀ ଭିକ୍ଟୋରିଆ ଭାରତର ଶାସନଭାର ଗ୍ରହଣ କଲେ । ଭାରତର ଗଭର୍ଣ୍ଣର ଜେନେରାଲଙ୍କ ପରିବର୍ତ୍ତେ ଭାଇସ୍‌ରାୟ ଓ ଗଭର୍ଣ୍ଣର ଜେନେରାଲ ପଦ ସୃଷ୍ଟି ହେଲା । ଭାଇସ୍‌ରାୟ ବ୍ରିଟିଶ ଶାସକଙ୍କର ପ୍ରତିନିଧିରୂପେ ଭାରତ ଶାସନ କଲେ । ଭାରତ ବିଷୟ ବୁଝିବାପାଇଁ 'ସେକ୍ରେଟେରୀ ଅଫ୍ ଷ୍ଟେଟ୍ ଫର୍ ଇଣ୍ଡିଆ' ବା 'ଭାରତ ମନ୍ତ୍ରୀ' ବ୍ରିଟିଶ ମନ୍ତ୍ରୀମଣ୍ଡଳରେ ରହିଲେ । ଭାରତ ମନ୍ତ୍ରୀଙ୍କୁ ସାହାଯ୍ୟ କରିବାପାଇଁ 'ଇଣ୍ଡିଆ କାଉନ୍‌ସିଲ୍' ନାମରେ ଗୋଟିଏ ପରାମର୍ଶଦାୟକ ସଭା ରହିଲା । ଏହା ନିୟମ ଅନୁସାରେ ଲର୍ଡ଼ କ୍ୟାନିଙ୍ଗ୍ ଭାରତରେ ପ୍ରଥମ ଭାଇସ୍‌ରାୟ ହେଲେ ।

**ମହାରାଣୀଙ୍କର ଘୋଷଣାପତ୍ର** :—କ୍ୟାନିଙ୍ଗ୍ ଖ୍ରୀ: ୧୮୫୮ରେ ଏଲାହାବାଦରେ ଗୋଟିଏ ବଡ଼ ଦରବାର କରି ମହାରାଣୀଙ୍କର ଶାନ୍ତିପୂର୍ଣ୍ଣ ଘୋଷଣା ଶୁଣାଇ ଭାରତୀୟମାନଙ୍କୁ ଆଶ୍ୱାସନା ଦେଇଥିଲେ । ସେ ଘୋଷଣା କରିଥିଲେ (୧) ମହାରାଣୀ ଇଷ୍ଟଇଣ୍ଡିଆ କମ୍ପାନୀଙ୍କ ହାତରୁ ସେହିଦିନଠାରୁ ଭାରତର ଶାସନ ଭାର ହାତକୁ ନେଲେ । (୨) ସରକାର କାହାର ଧର୍ମରେ ହସ୍ତକ୍ଷେପ କରିବେ ନାହିଁ ଏବଂ ଭାରତୀୟ ରୀତିନୀତି ପ୍ରତି ସମ୍ମାନ ଦେଖାଇବେ । (୩) ଜାତିଧର୍ମବର୍ଣ୍ଣ-



ନିର୍ବିଶେଷରେ ଯୋଗ୍ୟତାନୁସାରେ ଚାକିରି ଦିଆଯିବ । (୪) କମ୍ପାନୀଙ୍କ ଅମଳରେ ଯେଉଁସବୁ ସନ୍ଧି ହୋଇଥିଲା ତାହା ପୂର୍ବପରି ରହିବ । (୫) ଦେଶୀୟ ରାଜ୍ୟମାନେ ପୋଷ୍ୟପୁତ୍ର ଗ୍ରହଣ କରିପାରିବେ । (୬) ନ୍ୟାୟ ଉପରେ ଭାରତଶାସନ ପ୍ରତିଷ୍ଠିତ ହେବ । (୭) ବିଦ୍ରୋହରେ ଯେଉଁମାନେ ନରହତ୍ୟା କରିଥିଲେ ସେମାନଙ୍କ ବ୍ୟତୀତ ଅନ୍ୟମାନେ କ୍ଷମା ପାଇବେ ।

## ଅନୁଶୀଳନୀ

୧ । ନିମ୍ନଲିଖିତ ଘଟଣାଗୁଡ଼ିକ କାଳର କ୍ରମ ଅନୁସାରେ ସଜାଇ ରଖ :—ଭାରତରେ ପ୍ରଥମ ରେଲପଥ ନିର୍ମାଣ, ସତୀଦାହ ପ୍ରଥା ନିବାରଣ, ଇଂରେଜମାନଙ୍କର ବଙ୍ଗଳା ଅଧିକାର, ଇଂରେଜମାନଙ୍କର ଓଡ଼ିଶା ଅଧିକାର, ନନ୍ଦକୁମାରଙ୍କର ଫାଶି, ସିପାହୀ ବିଦ୍ରୋହ, ସାମନ୍ତସନ୍ଧି ପ୍ରବର୍ତ୍ତନ, ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରବର୍ତ୍ତନ ।

୨ । ନିମ୍ନଲିଖିତ ବାକ୍ୟମାନ ମଧ୍ୟରେ ଥିବା ଖ୍ରୀଷ୍ଟାବ୍ଦମାନ ବାଛି ଶୂନ୍ୟ ସ୍ଥାନଗୁଡ଼ିକ ପୂରଣ କର ଓ ସମ୍ପୂର୍ଣ୍ଣ ବାକ୍ୟଗୁଡ଼ିକ କାଳର କ୍ରମ ଅନୁସାରେ ସଜାଇ ରଖ :—

(କ) ଖୋର୍ଦ୍ଧାର ଭୋଇବଂଶୀୟ ରଜା ମୁକୁନ୍ଦ ଦେବ ଖ୍ରୀ: — ରେ ଇଂରେଜମାନଙ୍କ ଦ୍ୱାରା ବନ୍ଦୀ ହୋଇଥିଲେ ।

(ଖ) ଖ୍ରୀ: — ରେ ରେଗୁଲେଟିଙ୍ଗ୍ ଅକ୍ଟ୍ ଗଢ଼ା ହୋଇଥିଲା ।

(ଗ) ପଲାସୀଯୁଦ୍ଧରେ ଖ୍ରୀ: — ରେ ସିରାଜଉଦ୍ଦୌଲା ଇଂରେଜମାନଙ୍କ ଦ୍ୱାରା ପରାସ୍ତ ହୋଇଥିଲେ ।

(ଘ) ଇଂରେଜମାନେ ତୃତୀୟ କର୍ଣ୍ଣାଟ୍ ସମର ଚାଲିଥିଲାବେଳେ ଖ୍ରୀ: — ରେ ପଣ୍ଡିଚେରୀ ଦଖଲ୍ କଲେ ।

(ଙ) ସିପାହୀ ବିଦ୍ରୋହ ପରେ ଖ୍ରୀ: — ରେ ମହାରାଣୀ ଭିକ୍ଟୋରିଆଙ୍କର ଶାନ୍ତିପୂର୍ଣ୍ଣ ଘୋଷଣା ଏଲାହାବାଦ ଦରବାରରେ ଘୋଷିତ ହୋଇଥିଲା ।

ଖ୍ରୀ: ୧୭୭୩, ଖ୍ରୀ: ୧୭୬୧, ଖ୍ରୀ: ୧୮୦୪, ଖ୍ରୀ: ୧୭୫୭, ଖ୍ରୀ: ୧୮୫୮

---

# ଷଡ଼ବିଂଶ ଅଧ୍ୟାୟ

## ଭାଇସରାୟ ଓ ଗଭର୍ଣ୍ଣର-ଜେନେରାଲଗଣ

ମହାରାଣୀଙ୍କ ଘୋଷଣା ଅନୁସାରେ ଭାଇସରାୟ ବା ବଡ଼ଲାଟ ବ୍ରିଟିଶ ପ୍ରତିନିଧିରୂପେ ଭାରତ ଶାସନଭାର ଗ୍ରହଣ କଲେ । ପ୍ରତ୍ୟେକ ବଡ଼ଲାଟ ସାଧାରଣତଃ ପାଞ୍ଚବର୍ଷ ଲେଖାଏଁ ଭାରତର ଶାସନ କରିବାକୁ ଲାଗିଲେ ।

**ଲର୍ଡ କ୍ୟାନିଙ୍ଗ୍** ( ଖ୍ରୀ: ୧୮୫୬—ଖ୍ରୀ: ୧୮୬୨ ) :—ସେ ଭାରତର ପ୍ରଥମ ଭାଇସରୟ । ତାଙ୍କ ସମୟରେ କଲିକତା, ବମ୍ବେ ଓ ମାନ୍ଦ୍ରାଜରେ ହାଇକୋର୍ଟମାନ ବସିଲା, ଅଧିକର ଅଦାୟ ହେଲା, କାଗଜ ନୋଟ ଚଳିଲା ଓ ଖ୍ରୀ: ୧୮୬୧ରେ 'ଭାରତଶାସନ ଆଇନ' ଗଢାହେଲା । ଖ୍ରୀ: ୧୮୬୧ ର ଆଇନ ଫଳରେ ସରକାରଙ୍କ ଦ୍ୱାରା ମନୋନୀତ କେତେକ ବେସରକାରୀ ସଭ୍ୟ ନିୟମ ପ୍ରଣୟନ ପାଇଁ କାଉନ୍ସିଲ୍‌ରେ ସ୍ଥାନ ପାଇଲେ ।

**ପ୍ରଥମ ଲର୍ଡ ଏଲ୍‌ଗିନ୍** ( ଖ୍ରୀ: ୧୮୬୨—ଖ୍ରୀ: ୧୮୬୩ ) :— ତାଙ୍କ ସମୟରେ ସୀମାନ୍ତରେ 'ୱାହାବି'ମାନଙ୍କ ବିଦ୍ରୋହ ଦମନ କରାଯାଇଥିଲା ।

**ଲର୍ଡ ଲରେନ୍ସ୍** ( ଖ୍ରୀ: ୧୮୬୪—ଖ୍ରୀ:—୧୮୬୯ ) :— ପଞ୍ଜାବ ରାଜା ଦଲୀପସିଂହ ଦେବଙ୍କ ୯ ଅଙ୍କରେ ଖ୍ରୀ: ୧୮୬୬ ରେ ପ୍ରଥମେ ଅତିବୃଷ୍ଟି ଓ ପରେ ଅନାବୃଷ୍ଟି ହେତୁ ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ିଥିଲା । ଏହି ନଅଙ୍କ ଦୁର୍ଭିକ୍ଷରେ ଓଡ଼ିଶାରୁ କୋଡ଼ିଏ ଲକ୍ଷ ଲୋକ ମରିଥିଲେ । ଭବିଷ୍ୟତରେ ଅନାବୃଷ୍ଟି ହେତୁ ଖାଦ୍ୟାଭାବ ଦୂର କରିବାପାଇଁ ଓଡ଼ିଶାରେ କେନାଲମାନ ଖୋଳା ଯାଇଥିଲା । ଖ୍ରୀ: ୧୮୬୮—ଖ୍ରୀ: ୧୮୬୯ରେ ବୁନ୍ଦେଲ୍‌ଖଣ୍ଡ ଓ ରାଜପୁତାନାରେ ମଧ୍ୟ ଦୁର୍ଭିକ୍ଷ ପଡ଼ିଥିଲା ।

**ଲର୍ଡ ମେଓ୍ୱା** :—( ଖ୍ରୀ: ୧୮୬୯—ଖ୍ରୀ: ୧୮୭୨ ) :— ଅମଳରେ ସୁଏଜ୍‌କେନାଲ ଖୋଲା ହୋଇଥିଲା, କୃଷିବିଭାଗ ଖୋଲା ହୋଇଥିଲା ଓ ଭାରତୀୟ ରାଜପୁତମାନଙ୍କ ପାଇଁ ଅଜମିରରେ ମେୟୋ କଲେଜ ବସିଥିଲା । ଆଣ୍ଡାମାନ୍‌ରେ ଜଣେ ବନ୍ଦୀ ତାଙ୍କୁ ହତ୍ୟା କରିଥିଲା ।

**ଲର୍ଡ ନର୍ଥବ୍ରୁକ୍** ( ଖ୍ରୀ: ୧୮୭୨—ଖ୍ରୀ: ୧୮୭୬ ) :— ମହାରାଣୀଙ୍କର ବଡ଼ ପୁଅ (ସପ୍ତମ ଏଡ୍‌ୱାର୍ଡ୍) ଭାରତ ବୁଲି ଆସିଥିଲେ ।

ଷଡ଼ଯନ୍ତ୍ର କରୁଥିବାରୁ ବରୋଦାର ପୂର୍ବରାଜା ବିତାଡ଼ିତ ହେଲେ ଓ ଅନ୍ୟ ଜଣେ ରାଜା ହେଲେ ।

**ଲର୍ଡ ଲିଟନ୍** (ଖ୍ରୀ: ୧୮୭୬—ଖ୍ରୀ: ୧୮୮୦) :— ଭାରତରେ ଦୁର୍ଭିକ୍ଷ ପଡ଼ି ଲକ୍ଷ ଲକ୍ଷ ଲୋକ ମରୁଥିଲେ ମଧ୍ୟ ମହାରାଣୀ ଭିକ୍ଟୋରିଆ ଭାରତର ରାଜରାଜେଶ୍ୱରୀ ହେବାରୁ ଦିଲ୍ଲୀରେ ଏକ ବଡ଼ ଦରବାର ହେଲା (ଖ୍ରୀ: ୧୮୭୭) । ଲିଟନ୍ ଦେଶୀୟଭାଷାରେ ସମ୍ବାଦ ନିୟନ୍ତ୍ରଣ କରିବାକୁ 'ମୁଦ୍ରାଯନ୍ତ୍ର ଆଇନ୍' ଓ ଅସ୍ତ୍ରଶସ୍ତ୍ର ନିୟନ୍ତ୍ରଣ କରିବାକୁ 'ଅସ୍ତ୍ର ଆଇନ୍' ଗଢ଼ିଥିଲେ ।

**ଦ୍ୱିତୀୟ ଅଫଗାନ ସମର** (ଖ୍ରୀ: ୧୮୭୬—ଖ୍ରୀ: ୧୮୮୦) :— କାବୁଲର ଅମୀର ଶେର ଅଲ୍ଲି ରୁଷୀୟ ଦୂତଙ୍କୁ ଗ୍ରହଣ କରିବାରୁ ଇଂରେଜ ଓ ଅଫଗାନଙ୍କ ମଧ୍ୟରେ ଯୁଦ୍ଧ ହେଲା । ଅମୀର ପରାସ୍ତହୋଇ ପଳାଇବାରୁ ତାଙ୍କ ପୁଅ ୟାକୁବ୍ ଖାଁ ଇଂରେଜମାନଙ୍କ ସହ ସନ୍ଧିକରି ଅମୀର ହେଲେ । ଅଫଗାନମାନେ ପୁନର୍ବାର ବିଦ୍ରୋହ କରିବାରୁ ଯୁଦ୍ଧ ହେଲା ଓ ୟାକୁବ୍ ବନ୍ଦୀ ହେଲେ । ତାଙ୍କ ଭାଇ ଆୟୁବ୍ ଖାଁ ଯୁଦ୍ଧ ଚଳାଇଲେ । ଏହି ସମୟରେ ଲିଟନ୍ ଇସ୍ତଫା ଦେଲେ ଓ ଲର୍ଡ ରିପନ୍ ଭାରତର ବଡ଼ଲାଟ ହେଲେ ।

**ଲର୍ଡ ରିପନ୍** (ଖ୍ରୀ: ୧୮୮୦—ଖ୍ରୀ: ୧୮୮୪) :— ଲର୍ଡ ରିପନ୍ ଦ୍ୱିତୀୟ ଅଫଗାନ ସମରକୁ ଶେଷ କଲେ । ଦୋସ୍ତ ମହମ୍ମଦଙ୍କ ନାତି ଅବଦୁର୍ ରହମନ୍ ଆୟୁବ ଖାଁଙ୍କୁ ପରାସ୍ତକରି ଅମୀର ହେଲେ ଓ ଇଂରେଜମାନଙ୍କୁ କିଛି ରାଜ୍ୟ ଦେବାରୁ ରିପନ୍ ଇଂରେଜ ସୈନ୍ୟ ଅଫଗାନିସ୍ଥାନରୁ ଫେରାଇ ଆଣିଲେ । ଏହି ରାଜ୍ୟଦ୍ୱାରା ବ୍ରିଟିଶ ବେଲୁଚିସ୍ଥାନ ପ୍ରଦେଶ ଗଠିତ ହେଲା । ବୋଲାନ୍ ଗିରିସଙ୍କଟ ଇଂରେଜମାନଙ୍କ ଅଧୀନରେ ରହିଲା ଓ ଇଂରେଜମାନେ କ୍ୱେଟାରେ ଦୁର୍ଗ ନିର୍ମାଣ କରିବାର ଅଧିକାର ପାଇଲେ ।

**ସ୍ଥାନୀୟ ସ୍ୱାୟତ୍ତ ଶାସନ** :—ଭାରତୀୟମାନେ ଇଂରେଜି ଶିକ୍ଷା ପାଇବାରୁ ଦେଶ ଶାସନରେ ଅଧିକାର ଦାବିକରି ସମିତିମାନ ଗଢ଼ିଲେ । ଲର୍ଡ ରିପନ୍ ଲୋକସାଧାରଣଙ୍କୁ ଦେଶ ଶାସନ କାର୍ଯ୍ୟରେ କ୍ରମେ କିଛି କିଛି ଅଧିକାର ଦେବାପାଇଁ କେତେଗୁଡ଼ିଏ **ସ୍ୱାୟତ୍ତ ଶାସନ ଆଇନ** କରିଥିଲେ । ତାହା ଫଳରେ ମ୍ୟୁନିସିପାଲିଟି ଓ ଜିଲାବୋର୍ଡମାନ ବସିଲା ।

**ମ୍ୟୁନିସିପାଲିଟି** :—ସହରମାନଙ୍କରେ ରାସ୍ତା, ଶିକ୍ଷା, ସ୍ୱାସ୍ଥ୍ୟ ଉନ୍ନତିର ଭାର ନେବାପାଇଁ ମ୍ୟୁନିସିପାଲିଟିମାନ ସ୍ଥାପିତ ହୋଇଥିଲା । ସହରର ଲୋକମାନେ କେତେଗୁଡ଼ିଏ ସଭ୍ୟଙ୍କୁ ବାଛିଲେ ଓ ସରକାର ସେତିକି ବା ତା ଠାରୁ କମ୍ ସଂଖ୍ୟାର ସଭ୍ୟ ମନୋନୀତ କଲେ । ଅନେକ କ୍ଷେତ୍ରରେ ନିର୍ବାଚିତ ସଭ୍ୟମାନଙ୍କ ମଧ୍ୟରୁ ଜଣେ ମ୍ୟୁନିସିପାଲିଟିର ଚେୟାରମ୍ୟାନ୍ ହେଲେ । ସେ ଓ ମେମ୍ବରମାନେ ମିଶି ମ୍ୟୁନିସିପାଲିଟି ପରିଚାଳନା କଲେ ।

**ଜିଲାବୋର୍ଡ** :— କେତେକ ଜିଲାରେ ଜିଲାବୋର୍ଡ ଓ ଲୋକାଲ୍ ବୋର୍ଡମାନ ସ୍ଥାପିତ ହେଲା । ଲୋକସାଧାରଣଙ୍କଦ୍ୱାରା ନିର୍ବାଚିତ ସଭ୍ୟ ଓ ସରକାରଙ୍କଦ୍ୱାରା ମନୋନୀତ ସଭ୍ୟ ଜିଲା-ବୋର୍ଡ ପରିଚାଳନା କରୁଥିଲେ । ଜିଲାର ମାଜିଷ୍ଟ୍ରେଟ୍ ଏହି ବୋର୍ଡର ଚେୟାରମ୍ୟାନ୍ ଖ୍ରୀ: ୧୯୧୮ ପର୍ଯ୍ୟନ୍ତ ହୋଇ ଆସୁଥିଲେ । ଜିଲାବୋର୍ଡ ଓ ଲୋକାଲ୍‌ବୋର୍ଡ ଶିକ୍ଷା, ସ୍ୱାସ୍ଥ୍ୟ ଓ ରାସ୍ତାଘାଟର ଭାର ନେଇଥିଲେ । ଏହିପରି ଭାରତୀୟମାନେ ସ୍ଥାନୀୟ ସ୍ୱାୟତ୍ତ ଶାସନରେ କିଛି ଅଧିକାର ପାଇଲେ । ଏହା ଫଳରେ ଭାରତବାସୀ ଜାତୀୟ କଂଗ୍ରେସ ସ୍ଥାପନ କରି ସ୍ୱାଧୀନତା ଆନ୍ଦୋଳନ ଚଳାଇଲେ ।



ରିପନ୍ ଭିକ୍ଟୋରିଆଙ୍କର ଘୋଷଣାପତ୍ର ଅନୁସାରେ ମହୀଶୂରର ପୂର୍ବ ହିନ୍ଦୁରାଜାଙ୍କର ବଂଶଧରଙ୍କୁ ମହୀଶୂର ଫେରାଇ ଦେଲେ ।

**ଇଲ୍‌ବର୍ଟ ବିଲ୍**:—ଭାରତୀୟ ମାଜିଷ୍ଟ୍ରେଟ୍‌ମାନେ ଇଉରୋପୀୟ ଅପରାଧୀମାନଙ୍କର ମକଦ୍ଦମା ବିଚାର କରିପାରୁ ନଥିଲେ । ରିପନ୍ ଭାରତୀୟ ମାଜିଷ୍ଟ୍ରେଟ୍‌ମାନଙ୍କୁ ଇଉରୋପୀୟ ଅପରାଧୀମାନଙ୍କର ମକଦ୍ଦମା ବିଚାର କରିବାପାଇଁ ଅଧିକାର ଦେବାକୁ ଇଚ୍ଛା କରିଥିଲେ । କାଉନ୍‌ସିଲର ଆଇନ ସଭ୍ୟ **ଇଲବର୍ଟ** ଏଥିପାଇଁ ଗୋଟିଏ ବିଲ୍ ଆଗତ କରିଥିଲେ । ଭାରତରେ ଥିବା ଇଉରୋପୀୟମାନେ ଆପତ୍ତି କରିବାରୁ ସରକାର ଏ ବିଲ୍‌ଟି ଉଠାଇ ନେଲେ ।

**ଅନ୍ୟାନ୍ୟ ଲୋକହିତକର କାର୍ଯ୍ୟ**:—ରିପନ୍ ଖ୍ରୀ: ୧୮୮୧ରେ ପ୍ରଥମେ ଜନଗଣନା କରାଇଥିଲେ । ସେହିଦିନଠାରୁ ପ୍ରତି ଦଶବର୍ଷରେ ଥରେ ଲେଖାଏଁ ଜନଗଣନା ହୋଇ ଆସୁଅଛି । ସେ କାରଖାନା ଆଇନ ଗଢ଼ି କାରଖାନାମାନଙ୍କରେ କାମ କରୁଥିବା ସ୍ତ୍ରୀ ଓ ବାଳକମାନଙ୍କର ମଙ୍ଗଳ ପାଇଁ କାମ କରିବାର ସମୟ ଓ ବୟସ ନିର୍ଦ୍ଦିଷ୍ଟ କରିଥିଲେ । ସେ ଲୁଣକର କମାଇ ଦେଇ ଗରିବମାନଙ୍କର ଉପକାର କରିଥିଲେ । ପଣ୍ୟଦ୍ରବ୍ୟମାନଙ୍କ ଉପରୁ ଆମଦାନୀ ଶୁଳ୍କ ଉଠାଇ ଦେଇଥିଲେ । ଲିଟନ୍‌ଙ୍କ ସମୟରୁ ଦେଶୀୟ ଭାଷାର ଖବରକାଗଜମାନଙ୍କ ଉପରେ ଥିବା କଟକଣାମାନ ସେ ଉଠାଇ ଦେଇଥିଲେ । ସେ ରାଜସ୍ୱ ଓ କୃଷି ବିଭାଗର ସଂସ୍କାର କରିଥିଲେ; କୃଷି ଓ ଶିଳ୍ପ ପ୍ରଦର୍ଶନୀମାନ ଖୋଲିଥିଲେ ।

ଏହିସବୁ ଲୋକହିତକର କାର୍ଯ୍ୟ ଯୋଗୁଁ ଭାରତୀୟମାନେ ରିପନ୍‌ଙ୍କଠାରେ କୃତଜ୍ଞ ।

**ଲର୍ଡ ଡଫ୍‌ରିନ୍** (ଖ୍ରୀ: ୧୮୮୪—ଖ୍ରୀ: ୧୮୮୮):—ସେ ରାଓଲପିଣ୍ଡି ଠାରେ ଗୋଟିଏ ଦରବାର କରି କାବୁଲର ଅମୀରମାନଙ୍କୁ ଅଭ୍ୟର୍ଥନା

କରିଥିଲେ । ତାଙ୍କ **ସମୟରେ** ତୃତୀୟ ବ୍ରହ୍ମ ସମର ହୋଇଥିଲା ଓ ଯୁଦ୍ଧ ପରେ ସମୁଦାୟ ବ୍ରହ୍ମଦେଶ **ଇଂରେଜ** ରାଜ୍ୟରେ **ମିଶିଲା** ।

**ଭାରତ ଜାତୀୟ କଂଗ୍ରେସ** :—ଖ୍ରୀ: ୧୮୮୫ ରେ ଭାରତ ଜାତୀୟ କଂଗ୍ରେସ ଗଠିତ ହୋଇଥିଲା । ମହାମନା **ହ୍ୟୁମ୍ ସାହେବ** ଏଥିପାଇଁ ଭାରତମାନଙ୍କୁ ପ୍ରେରଣା ଦେଇଥିଲେ । ସେହି ବର୍ଷ ଭାରତ ଜାତୀୟ କଂଗ୍ରେସର ପ୍ରଥମ ଅଧିବେଶନ ବମ୍ବେଠାରେ ବସିଥିଲା । ଉମେଶଚନ୍ଦ୍ର ବାନାର୍ଜି ଏହି କଂଗ୍ରେସର ସଭାପତି ହୋଇଥିଲେ । ଭାରତୀୟମାନଙ୍କୁ ଶାସନକ୍ଷେତ୍ରରେ ସୁବିଧା ଦେବାପାଇଁ ଓ ସେମାନଙ୍କର ଅସୁବିଧା ଓ ଅଭିଯୋଗ ଦୂର କରିବାପାଇଁ ସରକାରଙ୍କଠାରେ ଗୁହାରିଣ ଓ ପ୍ରାର୍ଥନା କରିବା ଏହି କଂଗ୍ରେସର ଲକ୍ଷ୍ୟ ଥିଲା । କ୍ରମେ କଂଗ୍ରେସ ଶକ୍ତିଶାଳୀ ହୋଇଥିଲା । ପ୍ରଥମ ଅଧିବେଶନ ପରେ ଭାରତର ବିଭିନ୍ନ ସ୍ଥାନରେ କଂଗ୍ରେସର ବାର୍ଷିକ ଅଧିବେଶନ ହୋଇ ଆସୁଅଛି ।

**ଲର୍ଡ ଲାନ୍ସ୍‌ଡାଉନ୍** (ଖ୍ରୀ: ୧୮୮୮—ଖ୍ରୀ: ୧୮୯୪) :—ସେ ମଣିପୁରର ବିଦ୍ରୋହ ଦମନ କରିଥିଲେ ଓ ଉତ୍ତର ପଶ୍ଚିମ ସୀମାନ୍ତକୁ ନିରାପଦ ରଖିବାପାଇଁ କାବୁଲର ଅମୀରଙ୍କ ସଙ୍ଗେ ବନ୍ଧୁତା ସ୍ଥାପନ କରିଥିଲେ ।

**ବ୍ୟବସ୍ଥା ସଭା ଆଇନ୍** :—ଖ୍ରୀ: ୧୮୯୨ରେ ଭାରତୀୟ ବ୍ୟବସ୍ଥା ସଭା ଆଇନ ବଳରେ କେନ୍ଦ୍ର ଓ ପ୍ରାଦେଶିକ ବ୍ୟବସ୍ଥା ସଭାର ସଭ୍ୟ ସଂଖ୍ୟା ବଢ଼ାଇ **ଦିଆ**ଯାଇଥିଲା । ଏହା ପୂର୍ବରୁ ବ୍ୟବସ୍ଥାସଭାକୁ ବେସରକାରୀ ସଭ୍ୟମାନେ ସରକାରଙ୍କଦ୍ୱାରା ମନୋନୀତ ହେଉଥିଲେ । ଏହି ଆଇନ ଦ୍ୱାରା ମ୍ୟୁନିସିପାଲିଟି, ଜିଲ୍ଲାବୋର୍ଡ଼ ଓ ବିଶ୍ୱବିଦ୍ୟାଳୟମାନେ କେତେକ ସଭ୍ୟ ନିର୍ବାଚନ କରି ପଠାଇବାର ଅଧିକାର ପାଇଲେ । ବ୍ୟବସ୍ଥା ସଭାର ସଭ୍ୟମାନେ ବଜେଟ ଆଲୋଚନା କରିବାକୁ ଓ ଶାସନ ସମ୍ପର୍କରେ ପ୍ରଶ୍ନ ପଚାରିବାକୁ ଅଧିକାର ପାଇଲେ ।

**ଦ୍ୱିତୀୟ ଲର୍ଡ଼ ଏଲଗିନ୍** (ଖ୍ରୀ : ୧୮୯୪—ଖ୍ରୀ : ୧୮୯୯) :—ବିଳାତ ଜନିଷ ଭାରତରେ ବେଶୀ ବିକି ହେବାପାଇଁ ଆମଦାନୀ ପଣ୍ୟଦ୍ରବ୍ୟ ଉପରୁ ସେ ଶୁଳ୍କ ଉଠାଇ ଦେଇଥିଲେ । ତାଙ୍କ ସମୟରେ ଭାରତରେ ପ୍ଳେଗ୍ ଓ ଭୂମିକମ୍ପ ହେତୁ ବହୁତ କ୍ଷତି ହୋଇଥିଲା । ଭିକ୍ଟୋରିଆଙ୍କ ରାଜତ୍ୱର ୬୦ ବର୍ଷ ପୂର୍ଣ୍ଣ ହେବାରୁ ତାଙ୍କର ହୀରକ ଜୟନ୍ତୀ ଭାରତରେ ପାଳିତ ହୋଇଥିଲା ।

**ଲର୍ଡ଼ କର୍ଜନ** (ଖ୍ରୀ : ୧୮୯୯—ଖ୍ରୀ : ୧୯୦୫) :—ଲର୍ଡ଼ କର୍ଜନ ଭାରତର ଜଣେ ପ୍ରସିଦ୍ଧ ବଡ଼ଲାଟ ଥିଲେ । ସେ ଜଣେ ଚତୁର ଓ ବିଚକ୍ଷଣ ରାଜନୀତିଜ୍ଞ ଥିଲେ ଓ ଭାରତର ଶାସନର ବହୁ ସଂସ୍କାର କରିଥିଲେ । କର୍ଜନଙ୍କ ସମୟରେ ମହାରାଣୀ ଭିକ୍ଟୋରିଆଙ୍କ ମୃତ୍ୟୁପରେ ସପ୍ତମ ଏଡୱାର୍ଡ଼ ଭାରତ ସମ୍ରାଟ ହୋଇଥିଲେ ।



**ଶାସକମାନଙ୍କ ସହିତ ସମ୍ପର୍କ** :—ଭାରତର ପଶ୍ଚିମ ସୀମାନ୍ତ ପ୍ରତି ଭଲ ଦୃଷ୍ଟି ହେବାପାଇଁ ସେ ଭାରତର ପଶ୍ଚିମ ସୀମାନ୍ତ ପ୍ରଦେଶ ଗଠନ କରିଥିଲେ । ସେ ଅଫଗାନସ୍ଥାନର ଅମୀରମାନଙ୍କ ସଙ୍ଗେ ବନ୍ଧୁତା ସ୍ଥାପନ କରିଥିଲେ ଓ ନିଜାମଙ୍କ ଠାରୁ ବେରାର ସ୍ଥାୟୀଭାବରେ ପଟ୍ଟା କରି ନେଇଥିଲେ ।

**ବଙ୍ଗବିଚ୍ଛେଦ** :—କର୍ଜନ୍‌ଙ୍କ ପୂର୍ବରୁ ବଙ୍ଗ, ବିହାର ଓ ଓଡ଼ିଶା ଜଣେ ଗଭର୍ଣ୍ଣରଙ୍କ ଅଧୀନରେ ଥିଲା । ଶାସନର ସୁବିଧାପାଇଁ କର୍ଜନ୍ ବିହାର ଓଡ଼ିଶା ଓ ପଶ୍ଚିମ ବଙ୍ଗକୁ ଗୋଟିଏ ପ୍ରଦେଶରେ, ପୂର୍ବ ବଙ୍ଗ ଓ ଆସାମକୁ

ଅନ୍ୟ ଗୋଟିଏ ପ୍ରଦେଶରେ ପରିଣତ କଲେ । ଏହା ଫଳରେ ବଙ୍ଗାଳୀମାନେ ଦୁଇଟି ପ୍ରଦେଶରେ ଅଲଗା ଅଲଗା ହୋଇ ବଣ୍ଟିଗଲେ । ସୁରେନ୍ଦ୍ରନାଥ ବାନାର୍ଜି ପ୍ରଭୃତି ବଙ୍ଗନେତାମାନେ ଭାବିଲେ କର୍ଜନ ବଙ୍ଗାଳୀ ଜାତିର ଏକତା ଓ ସଂସ୍କୃତିକୁ ନଷ୍ଟ କରିବାପାଇଁ ବଙ୍ଗଳାକୁ ଏପରି ବିଭକ୍ତ କରିଛନ୍ତି । ବଙ୍ଗଳାର ଦୁଇ ଅଂଶକୁ ମିଶାଇବାପାଇଁ କର୍ଜନ୍‌ଙ୍କ ପାଖରେ ଆପତ୍ତି କଲେ ମଧ୍ୟ କିଛି ଫଳ ହେଲା ନାହିଁ । ତେଣୁ ବଙ୍ଗାଳୀମାନେ ବିଦେଶୀ ଜିନିଷ ବର୍ଜନ କରି ସ୍ୱଦେଶୀ ଜିନିଷ ବ୍ୟବହାର କଲେ । ଏହି ସ୍ୱଦେଶୀ ଆନ୍ଦୋଳନ ଭାରତବର୍ଷର ଅନ୍ୟ ଅଞ୍ଚଳରେ ବ୍ୟାପିଲା । ବଙ୍ଗାଳୀମାନେ ଗୁପ୍ତ ସଙ୍ଘମାନ ସ୍ଥାପନ କରି ଇଂରେଜ ରାଜକର୍ମଚାରୀମାନଙ୍କୁ ହତ୍ୟା କରିବାକୁ ଲାଗିଲେ । ବଙ୍ଗଳାରେ ବିଦ୍ରୋହ ଖେଳିଗଲା । ତଥାପି ବଙ୍ଗ ବିଚ୍ଛିନ୍ନ ହୋଇ ଖ୍ରୀ: ୧୯୧୧ ପର୍ଯ୍ୟନ୍ତ ରହିଲା ।

**ସମ୍ବଲପୁର ମିଶ୍ରଣ** :—ସ୍ୱଭାବତଃ ପ୍ରଦେଶ ଗଠନ କର୍ଜନଙ୍କର ନୀତି ଥିଲା । ସେ ଓଡ଼ିଆଭାଷୀ ଅଞ୍ଚଳମାନଙ୍କୁ ଏକତ୍ର କରିବାପାଇଁ ଇଚ୍ଛା କରିଥିଲେ ମଧ୍ୟ ଗଞ୍ଜାମ ପ୍ରଭୃତିକୁ ମାନ୍ଦ୍ରାଜରୁ ଆଣି ଓଡ଼ିଶାରେ ମିଶାଇ ପାରି ନଥିଲେ । ସେ ସମ୍ବଲପୁର ଜିଲ୍ଲା ଏବଂ ତା ନିକଟରେ ଥିବା ଛଅଟି ଗଡ଼ଜାତ (କଳାହାଣ୍ଡି, ପାଟଣା, ସୋନପୁର, ବାମଣ୍ଡା, ଗାଙ୍ଗପୁର, ରେଢ଼ାଖୋଲ) ମଧ୍ୟପ୍ରଦେଶରୁ ଆଣି ଓଡ଼ିଶାରେ ମିଶାଇଥିଲେ ।

**ସଂସ୍କାର** :—କର୍ଜନ୍ ସମବାୟ ସମିତିମାନ ବସାଇଥିଲେ । ଏହାଦ୍ୱାରା କୃଷୀମାନଙ୍କର ବିଶେଷ ଉପକାର ହୋଇଥିଲା । ସେ ଲୁଣ ଉପରୁ କର ଉଠାଇଦେଇ ଗରିବମାନଙ୍କର ଉପକାର କରିଥିଲେ । ପ୍ରାଚୀନ କୀର୍ତ୍ତିମାନଙ୍କର ଅବିଷ୍କାର ଓ ରକ୍ଷଣାବେକ୍ଷଣ ପାଇଁ ସେ ପ୍ରତ୍ନତତ୍ତ୍ୱ ବିଭାଗ ସ୍ଥାପନ କରିଥିଲେ । ସେ ବିଶ୍ୱବିଦ୍ୟାଳୟ ଆଇନ ଗଠନ କରି ଛାତ୍ରମାନଙ୍କର ଦରମା ବଢ଼ାଇ ଦେଇଥିଲେ ଓ ବିଶ୍ୱବିଦ୍ୟାଳୟଗୁଡ଼ିକରେ ଦେଶୀ

ସରକାରୀ କ୍ଷମତା ଜାରି କରିଥିଲେ । ସେ ଶିକ୍ଷା ଓ ପୋଲିସ ବିଭାଗରେ ବହୁତ ସଂସ୍କାର କରିଥିଲେ ।

ଭାରତର ସୈନ୍ୟବିଭାଗ ସମ୍ପର୍କରେ ବିଲାତ ସରକାରଙ୍କ ସଙ୍ଗେ ତାଙ୍କର ମତଭେଦ ହେବାରୁ ସେ ଖ୍ରୀ : ୧୯୦୫ରେ ଇସ୍ତଫା ଦେଇଥିଲେ ।

**ଦ୍ୱିତୀୟ ଲର୍ଡ ମିଣ୍ଟୋ** (ଖ୍ରୀ: ୧୯୦୫—ଖ୍ରୀ : ୧୯୧୦):— ବଙ୍ଗ ବିଚ୍ଛେଦ ଯୋଗୁଁ ସାରା ଭାରତରେ ସ୍ୱଦେଶୀ ଆନ୍ଦୋଳନ ଚାଲିଥିଲା । ଭାରତୀୟମାନେ ଶାସନରେ ଅଧିକ ଭାଗ ନେବାପାଇଁ ଦାବି କରୁଥିଲେ । ମିଣ୍ଟୋ ଏହି ଆନ୍ଦୋଳନ ଦବାଇବାପାଇଁ କଡ଼ା ନିୟମମାନ ଜାରିକରି ଶାସନକ୍ଷେତ୍ରରେ ଭାରତୀୟମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ଭାରତମନ୍ତ୍ରୀଙ୍କୁ ସୁପାରିଶ କରିଥିଲେ ।

**ମର୍ଲେ-ମିଣ୍ଟୋ ଶାସନ ସଂସ୍କାର** :—ମିଣ୍ଟୋଙ୍କ ସୁପାରିଶ ଅନୁସାରେ ଖ୍ରୀ: ୧୯୦୯ ରେ ବିଲାତ ପାର୍ଲିଅମେଣ୍ଟରେ ଗୋଟିଏ ଆଇନ ଗଢ଼ା ହୋଇଥିଲା । ଏହାର ନାମ ମର୍ଲେ-ମିଣ୍ଟୋ ଶାସନ ସଂସ୍କାର । ଏହି ଆଇନ ଅନୁସାରେ କେନ୍ଦ୍ର ଓ ପ୍ରାଦେଶିକ ବ୍ୟବସ୍ଥା ସଭାମାନଙ୍କରେ ପୂର୍ବାପେକ୍ଷା ବେଶୀ ବେସରକାରୀ ସଭ୍ୟ ସ୍ଥାନ ପାଇଥିଲେ । ଭାରତମନ୍ତ୍ରୀଙ୍କ କାର୍ଯ୍ୟକାରୀ ସଭାରେ, କେନ୍ଦ୍ର ଓ ପ୍ରାଦେଶିକ ସରକାରଙ୍କ କାର୍ଯ୍ୟକାରୀ ସଭାମାନଙ୍କରେ ଜଣେ ଲେଖାଏ ଭାରତୀୟ ସଭ୍ୟ ସ୍ଥାନ ପାଇଲେ ।



**ସମ୍ରାଟ୍ ପଞ୍ଚମ ଜର୍ଜ**:—ଖ୍ରୀ: ୧୯୧୦ ରେ ସପ୍ତମ ଏଡ୍‌ୱାର୍ଡଙ୍କର ମୃତ୍ୟୁ ହେବାରୁ ତାଙ୍କ ପୁଅ ପଞ୍ଚମ ଜର୍ଜ ସମ୍ରାଟ୍ ହେଲେ ।

**ଦ୍ୱିତୀୟ ଲର୍ଡ୍ ହାର୍ଡ଼ିଞ୍ଜ୍** (ଖ୍ରୀ: ୧୯୧୦—ଖ୍ରୀ: ୧୯୧୬) :—ଭାରତରେ ସ୍ୱଦେଶୀ ଆନ୍ଦୋଳନ ପ୍ରବଳ ହେବାରୁ ଭାରତୀୟମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ସମ୍ରାଟ୍ ପଞ୍ଚମ ଜର୍ଜ ଭାରତ ଆସି ଖ୍ରୀ: ୧୯୧୧ ରେ ଦିଲ୍ଲୀରେ ଗୋଟିଏ ଦରବାର କରିଥିଲେ । ଏହି ଦରବାରରେ ସମ୍ରାଟ୍ଙ୍କ ଘୋଷଣା ଅନୁସାରେ ପୂର୍ବବଙ୍ଗ ପଶ୍ଚିମବଙ୍ଗ ମିଶି ପୁନର୍ବାର ବଙ୍ଗ ପ୍ରଦେଶ ଗଠିତ ହେଲା । ଆସାମ ଗୋଟିଏ ଅଲଗା ପ୍ରଦେଶ ହେଲା । ବିହାର ଓଡ଼ିଶା ଓ ଛୋଟନାଗପୁର ମିଶି ବିହାର ଓଡ଼ିଶା ପ୍ରଦେଶ ଗଠିତ ହେଲା । ଭାରତର ରାଜଧାନୀ କଲିକତାରୁ ଦିଲ୍ଲୀକୁ ଉଠାଇ ନିଆଗଲା ।

**ଇଉରୋପୀୟ ମହାଯୁଦ୍ଧ** :—ବାଣିଜ୍ୟ ଓ ଉପନିବେଶ ପାଇଁ ଇଉରୋପୀୟ ଶକ୍ତିମାନଙ୍କ ମଧ୍ୟରେ ପ୍ରତିଯୋଗିତା ଲାଗି ଖ୍ରୀ: ୧୯୧୪ ବେଳକୁ ଇଉରୋପୀୟ ଶକ୍ତିମାନେ ଦୁଇ ଦଳରେ ବିଭକ୍ତ ହୋଇଥିଲେ । ଏକ ଦଳରେ ଇଂଲଣ୍ଡ, ଫ୍ରାନ୍ସ୍, ରୁଷିଆ ପ୍ରଭୃତି ଦେଶ ଓ ଅନ୍ୟ ପକ୍ଷରେ ଜର୍ମାନୀ, ଅଷ୍ଟ୍ରିଆ, ତୁର୍କୀ ପ୍ରଭୃତି ଦେଶ ଯୁଦ୍ଧପାଇଁ ସଜବାଜ ହୋଇ ବସିଥିଲେ । ଠିକ୍ ଏହି ସମୟରେ ଅଷ୍ଟ୍ରିଆର ରାଜକୁମାର ସର୍ବିଆ ଦେଶରେ ନିହତ ହେବାରୁ ଅଷ୍ଟ୍ରିଆର ରାଜା ସର୍ବିଆ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ସର୍ବିଆ ଓ ରୁଷିଆର ଲୋକେ ଏକଜାତୀୟ ଥିବାରୁ ରୁଷିଆ ସର୍ବିଆକୁ ସାହାଯ୍ୟ କଲା । ଇଂଲଣ୍ଡ, ଫ୍ରାନ୍ସ୍, ବେଲ୍ଜିଅମ୍, ଜାପାନ ଓ ଇଟାଲି ସର୍ବିଆ ପକ୍ଷରେ ଯୋଗଦେଲେ । ଅଷ୍ଟ୍ରିଆ ପକ୍ଷରେ ଜର୍ମାନୀ, ତୁର୍କୀ ଓ ବୁଲଗେରିଆ ଯୋଗଦେଲେ । ଦୁଇଦଳ ମଧ୍ୟରେ ଭୟଙ୍କର ଯୁଦ୍ଧ ହେଲା । ମହାତ୍ମା ଗାନ୍ଧି ଓ ହାର୍ଡିଞ୍ଜଙ୍କ ଯତ୍ନରେ ବ୍ରିଟିଶ ସରକାରଙ୍କୁ ଯୁଦ୍ଧରେ ସାହାଯ୍ୟ କରିବାପାଇଁ ଭାରତରୁ ବହୁ ଧନ ଓ ସୈନ୍ୟ ପଠାଯାଇଥିଲା । ଭାରତୀୟ ସୈନ୍ୟମାନେ ଫ୍ରାନ୍ସ୍, ପୂର୍ବ ଆଫ୍ରିକା ଓ ମେସୋପଟାମିଆରେ ବୀରତ୍ୱର ସହିତ ଯୁଦ୍ଧକରି ସୁନାମ ଅର୍ଜନ କଲେ । ଶେଷରେ ଆମେରିକା ଯୁକ୍ତରାଷ୍ଟ୍ର ଇଂଲଣ୍ଡ ପ୍ରଭୃତି

ମହିବ୍ରେଙ୍କୁ ସାହାଯ୍ୟ କରିବାରୁ ଜର୍ମାନୀ ପରାସ୍ତ ହେଲା । ଖ୍ରୀ : ୧୯୧୮ରେ ଫ୍ରାନ୍ସର ଭର୍ସେଲ୍ସ୍‌ଠାରେ ସନ୍ଧି ହେଲା । ଆମେରିକା ଯୁକ୍ତରାଷ୍ଟ୍ରର ସଭାପତି ଉଇଲ୍ ସନ୍ କେତେଗୁଡ଼ିଏ ସର୍ତ୍ତ ଅନୁସାରେ ସନ୍ଧି କରିବାକୁ ସୁପାରିଶ କରିଥିଲେ । ସେହି ସର୍ତ୍ତ ଅନୁସାରେ ସନ୍ଧି ନ ହେବାରୁ ଜର୍ମାନୀର ଲୋକମାନେ ଅସନ୍ତୁଷ୍ଟ ହେଲେ । ଭବିଷ୍ୟତରେ ଯୁଦ୍ଧ ବନ୍ଦ କରିବାପାଇଁ 'ଲିଗ୍ ଅଫ୍ ନେସନ୍ସ୍ (ଜାତି ସଂଘ) ଗଠିତ ହୋଇଥିଲା । ଆମ ଭାରତ ଏହି ସଂଘକୁ ସଭ୍ୟ ପଠାଇବାର ଅଧିକାର ପାଇଲା ।

## ଲର୍ଡ ଚେମ୍‌ସ୍‌ଫୋର୍ଡ ( ଖ୍ରୀ: ୧୯୧୬ – ଖ୍ରୀ: ୧୯୨୧ )

### ମଣ୍ଟେଗୁ୍ୟ-ଚେମ୍‌ସ୍‌ଫୋର୍ଡ଼ ଶାସନ ସଂସ୍କାର :—

ଇଉରୋପୀୟ ମହାସମରରେ ଭାରତୀୟମାନେ ବ୍ରିଟିଶ ସରକାରଙ୍କୁ ବହୁତ ସାହାଯ୍ୟ କରିଥିବାରୁ ଭାରତୀୟମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ବିଲାତ ପାର୍ଲିଆମେଣ୍ଟରେ ଖ୍ରୀ: ୧୯୧୯ ରେ ଗୋଟିଏ ଆଇନ ଗଢ଼ା ହୋଇଥିଲା ।

ଏହି ଆଇନଦ୍ୱାରା କେନ୍ଦ୍ର ବ୍ୟବସ୍ଥା ସଭା ଦୁଇ ଭାଗରେ ବିଭକ୍ତ ହୋଇଥିଲା । ପ୍ରଥମଟିର ନାମ ଉପର ବ୍ୟବସ୍ଥା ସଭା ( କାଉନ୍‌ସିଲ୍ ଅଫ୍ ଷ୍ଟେଟ୍ସ୍ ) ଓ ଦ୍ୱିତୀୟଟିର ନାମ ନିମ୍ନ ବ୍ୟବସ୍ଥା ସଭା ( ଲେଜିସ୍‌ଲେଟିଭ୍ ଆସେମ୍ବ୍ଲି ) । ଏହି ଦୁଇ ସଭାରେ ନିର୍ବାଚିତ ସଭ୍ୟସଂଖ୍ୟା ମନୋନୀତ ସଭ୍ୟସଂଖ୍ୟାଠାରୁ ବେଶୀ ଥିଲା । ଏହି ଦୁଇ ସଭା ଭାରତ ପାଇଁ ନୂଆ ଆଇନ କରିବା, ପୁରୁଣା ଆଇନ ସଂଶୋଧନ କରିବା, ଆୟବ୍ୟୟ ସ୍ଥିର କରିବା ଓ ନୂଆ କର ବସାଇବା ଅଧିକାର ପାଇଲେ । ସରକାରଙ୍କର କାର୍ଯ୍ୟକୁ ଏମାନେ ସମାଲୋଚନା କରିପାରୁଥିଲେ । ବଡ଼ଲାଟଙ୍କୁ ଶାସନକାର୍ଯ୍ୟରେ ସାହାଯ୍ୟ କରିବାପାଇଁ କାର୍ଯ୍ୟକାରୀ ସଭା ପୂର୍ବପରି ଥିଲା । ତାହାର ସଭ୍ୟ-ସଂଖ୍ୟା ବଢ଼ିଥିଲେ ମଧ୍ୟ ସେମାନେ ବ୍ୟବସ୍ଥା ସଭାଠାରେ ଦାୟୀ ନ ରହି ବଡ଼ଲାଟଙ୍କଠାରେ ଦାୟୀ ଥିଲେ ।

ପ୍ରଦେଶମାନଙ୍କରେ ଶାସନ ବିଷୟଗୁଡ଼ିକ **ରକ୍ଷିତ** ଓ **ହସ୍ତାନ୍ତରିତ** ଏହି ଦୁଇ ବିଭାଗରେ ବିଭକ୍ତ ହୋଇଥିଲା । ସାଧାରଣ ଶାସନ, ପୋଲିସ୍, ଜେଲ୍ ପ୍ରଭୃତି ପ୍ରଧାନ ବିଷୟମାନ ରକ୍ଷିତ ବିଭାଗ ଅଧୀନରେ ଓ ଶିକ୍ଷା, ସ୍ୱାସ୍ଥ୍ୟ ପ୍ରଭୃତି ବିଷୟମାନ ହସ୍ତାନ୍ତରିତ ବିଭାଗ ଅଧୀନରେ ରଖାଗଲା । ପ୍ରତ୍ୟେକ ପ୍ରଦେଶ ଜଣେ ଲାଟ୍‌ଙ୍କ ଅଧୀନରେ ରହିଲା । ତାଙ୍କୁ ସାହାଯ୍ୟ କରିବାପାଇଁ ଗୋଟିଏ କାର୍ଯ୍ୟକାରୀ ସଭା ରହିଲା । ଲାଟ୍ ଏହି ସଭା ସାହାଯ୍ୟରେ ରକ୍ଷିତ ବିଭାଗର ଶାସନ ଚଳାଇଲେ । ପ୍ରାଦେଶିକ ବ୍ୟବସ୍ଥା ସଭା ( ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍ ) ରେ ନିର୍ବାଚିତ ସଭ୍ୟସଂଖ୍ୟା ମନୋନୀତ ସଭ୍ୟସଂଖ୍ୟାଠାରୁ ବେଶୀ କରାଗଲା । ଲାଟ୍ ନିର୍ବାଚିତ ସଭ୍ୟମାନଙ୍କ ମଧ୍ୟରୁ ମନ୍ତ୍ରୀ ବାଛୁଥିଲେ । ଏହି ମନ୍ତ୍ରୀମାନେ ଲାଟ୍‌ଙ୍କ ତତ୍ତ୍ୱାବଧାନରେ ହସ୍ତାନ୍ତରିତ ବିଭାଗର ଶାସନ ଚଳାଉଥିଲେ । ସେମାନେ ବ୍ୟବସ୍ଥା ସଭାଠାରେ ଦାୟୀ ଥିଲେ । ଏହିପରି ଦୋହାଙ୍କିଆ ଶାସନ ପ୍ରଦେଶମାନଙ୍କରେ ଚାଲୁ ହେଲା । ଭାରତୀୟମାନେ ପ୍ରଦେଶମାନଙ୍କରେ କିଛି କ୍ଷମତା ପାଇଲେ ମଧ୍ୟ କେନ୍ଦ୍ରରେ କୌଣସି ପ୍ରକୃତ କ୍ଷମତା ପାଇ ନ ଥିଲେ ଓ ଅସନ୍ତୁଷ୍ଟ ହୋଇଥିଲେ ।

**ତୃତୀୟ ଆଫଗାନ ସମର** :—ଖ୍ରୀଃ ୧୯୧୯ରେ ଅଫଗାନ୍ ଅମୀର ଅମାନୁଲ୍ଲା ଭାରତ ସୀମାନ୍ତ ଆକ୍ରମଣ କରିବାରୁ ଇଂରେଜ ଓ ଅଫଗାନମାନଙ୍କ ମଧ୍ୟରେ ଯୁଦ୍ଧ ହେଲା । ଯୁଦ୍ଧପରେ ରାୱଲପିଣ୍ଡିଠାରେ ସନ୍ଧି ହେଲା ଓ ଅଫଗାନିସ୍ଥାନ ସ୍ୱାଧୀନ ହେଲା ।

**ଅସହଯୋଗ ଆନ୍ଦୋଳନ** :—'ମଣ୍ଟେଗ୍ୟୁ-ଚେମ୍‌ସ୍‌ଫୋର୍ଡ଼ ଶାସନ ସଂସ୍କାର' ଭାରତୀୟମାନଙ୍କୁ ସନ୍ତୁଷ୍ଟ କରି ପାରି ନ ଥିଲା । ଦେଶରେ ନାନାପ୍ରକାର ରାଜନୈତିକ ସଂଘମାନ ଗଠିତ ହେଲା ଓ ବିଦ୍ରୋହ ଦେଖାଗଲା । ଏହି ବିଦ୍ରୋହଗୁଡ଼ିକ ଦମନ କରିବା ପାଇଁ ଭାରତ ସରକାର ରାଓଲାଟ୍ ଆଇନ ଜାରି କରିଥିଲେ । ଏହାଦ୍ୱାରା ସନ୍ଦେହଜନକ ବିନା ବିଚାରରେ

ଯେକୌଣସି ଲୋକଙ୍କୁ ଦଣ୍ଡ ଦିଆଗଲା । ଏହି କଡ଼ା ଆଇନ ବିରୁଦ୍ଧରେ ପ୍ରତିବାଦ ସଭାମାନ ହେଲା । ପଞ୍ଜାବର ଅମୃତସରର ଜାଲିଅନାବାଗରେ ଲୋକମାନେ ରୌଲାଟ୍ ଆଇନ ବିରୁଦ୍ଧରେ ପ୍ରତିବାଦ ସଭା କରୁଥିଲେ । ଜେନେରାଲ୍ ଡାୟାର ସଭାର ଲୋକମାନଙ୍କ ଉପରେ ନିର୍ମମଭାବରେ ଗୁଳି-ଚଳାଇବାକୁ ଆଦେଶ ଦେଇଥିଲେ । ଶତଶତ ଲୋକ ଗୁଳିମାଡ଼ରେ ମଲେ । ପଞ୍ଜାବର ଲାଟ ଓଡ଼ାୟାର ସାହେବ ସାମରିକ ଆଇନ ଜାରିକରି ଲୋକ-ମାନଙ୍କ ଉପରେ ନାନାପ୍ରକାର ଅତ୍ୟାଚାର କରିଥିଲେ । ଏଥିରେ ଭାରତୀୟ-ମାନେ ଅସନ୍ତୁଷ୍ଟ ହେଲେ । ମୁସଲମାନ ଜଗତର ଖଲିଫା ତୁର୍କସ୍ତର ଶାସକଙ୍କଠାରୁ ଇଂରେଜ ପ୍ରମୁଖ ମହାସମରର ବିଜେତାମାନେ ବହୁ ରାଜ୍ୟ ଛଡ଼ାଇ ନେବାରୁ ମୁସଲମାନ୍‌ମାନେ **ଖଲିଫା**ଙ୍କ ସପକ୍ଷରେ ଖିଲାଫତ୍ ଆନ୍ଦୋଳନ ଚଳାଇଲେ । ଭାରତର ମୁସଲମାନ ନେତା ସମ୍ମଦ ଅଲି ଓ ସୌକତ ଅଲି ଏହି ଆନ୍ଦୋଳନ ଭାରତରେ ଚଳାଇଲେ ।



ମହାତ୍ମା ଗାନ୍ଧି ଭାରତରେ ଇଂରେଜ ସରକାରଙ୍କର ଏପରି ଅତ୍ୟାଚାର ଦେଖି କଂଗ୍ରେସର ସମ୍ମତି ନେଇ ଖ୍ରୀ: ୧୯୨୧ରୁ ଭାରତରେ **ଅସହଯୋଗ ଆନ୍ଦୋଳନ** ଚଳାଇଲେ । ସରକାରଙ୍କ ସହିତ ସମ୍ପର୍କ ତୁଟାଇ ପୂର୍ଣ୍ଣ ସ୍ୱରାଜ୍ୟ ପ୍ରତିଷ୍ଠା କରିବା ଏହି ଆନ୍ଦୋଳନର ଉଦ୍ଦେଶ୍ୟ ଥିଲା । ସରକାରୀ କୋର୍ଟ, ଉପାଧି ଓ ବିଦ୍ୟାଳୟ, ଶିକ୍ଷାନୁଷ୍ଠାନ, ନିଶାଦ୍ରବ୍ୟ ଓ ବିଦେଶୀ ଦ୍ରବ୍ୟ ବର୍ଜନ କରିବାପାଇଁ ମହାତ୍ମା ଗାନ୍ଧି ଲୋକଙ୍କୁ ଉପଦେଶ ଦେଲେ । ପୂର୍ଣ୍ଣ ଅହିଂସା ଭାବରେ ଆନ୍ଦୋଳନ ଚାଲିଲା ।

ଭାରତବାସୀମାନେ ଇଂରେଜଙ୍କୁ ମକଦ୍ଦମା ନକରିବା ପ୍ରସ୍ତାବକୁ ହୃଦୟରୁ ଗ୍ରହଣ କଲେ । କେତେକ ଓକିଲ୍ ଆନ୍ଦୋଳନରେ ଯୋଗଦେଲେ; କେତେକ ଲୋକ ସରକାରୀ ଉପାଧି ତ୍ୟାଗ କଲେ, କାଉନସିଲ୍‌ର ସଭ୍ୟମାନେ ଇସ୍ତଫା ଦେଲେ, କେତେକ ସରକାରୀ କର୍ମଚାରୀ କାର୍ଯ୍ୟ ଛାଡ଼ି ଆନ୍ଦୋଳନରେ ଯୋଗ ଦେଲେ, ଛାତ୍ରମାନେ ସ୍କୁଲ୍ କଲେଜ ଛାଡ଼ି ଆସିଲେ,



ଅବକାରୀ ଦୋକାନମାନଙ୍କ ଆଗରେ ପିକେଟିଙ୍ଗ୍ ଚାଲିଲା, ବିଦେଶୀ ଦ୍ରବ୍ୟ ଓ ଲୁଗା ବର୍ଜନ କରାଗଲା । ଘରେ ଘରେ ଅରଟ ଚାଲିଲା ଓ ଲୋକମାନେ ଖଦଡ଼ ପିନ୍ଧିଲେ । ଏହି ଆନ୍ଦୋଳନ **ଉତ୍କଳମଣି ଗୋପବନ୍ଧୁଙ୍କ** ଚେଷ୍ଟାରେ ଓଡ଼ିଶାର ପୁରପଲ୍ଲୀରେ ବ୍ୟାପିଥିଲା । ଭାରତର ଜନସାଧାରଣ ଏହି ଆନ୍ଦୋଳନକୁ ସମର୍ଥନ କରୁଥିବାରୁ ସରକାର ବିଚଳିତ ହୋଇଥିଲେ ।

**ଲର୍ଡ ରିଡିଙ୍ଗ୍** (ଖ୍ରୀ: ୧୯୨୧—ଖ୍ରୀ: ୧୯୨୬) :—ସେ କଡ଼ା ଆଇନ ଜାରି କରି ମହାତ୍ମା ଗାନ୍ଧି, ଅନେକ କଂଗ୍ରେସ ନେତା ଓ କର୍ମୀମାନଙ୍କୁ ବନ୍ଦୀକରି ଅସହଯୋଗ ଆନ୍ଦୋଳନକୁ ଦବାଇ ଦେଇଥିଲେ । ଆମ ଓଡ଼ିଶାରେ କଡ଼ା ଆଇନ ସଙ୍ଗେ ସଙ୍ଗେ ପୋଲିସମାନେ ଗୁପ୍ତରେ ବହୁଲୋକଙ୍କର ଘର ପୋଡ଼ିବାରୁ ଅସହଯୋଗ ଆନ୍ଦୋଳନ ଓଡ଼ିଶାରେ ଦବି ଯାଇଥିଲା ।

ଲର୍ଡ ରିଡିଙ୍ଗ୍ ଭାରତ ଭିତରି ଲୁଗା ଉପରୁ ଶୁଳ୍କ ଉଠାଇ ଦେଇ ଭାରତୀୟ ବସ୍ତ୍ରଶିଳ୍ପର ଉନ୍ନତି କରିଥିଲେ । ସେ ଲୁଣ ଉପରେ କର ବଢ଼ାଇବାରୁ ଲୋକେ ଅସନ୍ତୁଷ୍ଟ ହୋଇଥିଲେ । ସେ ରାଓଲାଟ୍ ଆଇନ ଉଠାଇଦେଲେ ଓ ବିଚାର ବିଭାଗରେ ଭାରତୀୟ ଓ ଇଉରୋପୀୟମାନଙ୍କ ବିଚାରରେ ଯେଉଁ ପାର୍ଥକ୍ୟ ଥିଲା ତାହା ଉଠାଇ ଦେଇଥିଲେ । ସେ ଡେରାଡୁନ୍‌ରେ ମିଲିଟାରି କଲେଜ ବସାଇଥିଲେ । ତାଙ୍କ ସମୟରେ ଇଂଲଣ୍ଡର ଯୁବରାଜ ( ଅଷ୍ଟମ ଏଡ଼ୱାର୍ଡ୍ ) ଭାରତକୁ ଆସି ଅତୀତ ଘଟଣାମାନ ଭୁଲିଯିବାକୁ ଭାରତୀୟମାନଙ୍କୁ ଅନୁରୋଧ କରିଥିଲେ ।

**ଲର୍ଡ ଇରୱିନ୍** ( ଖ୍ରୀ: ୧୯୨୬—ଖ୍ରୀ: ୧୯୩୧ ) :—ସେ କୃଷି ବିଭାଗର ଉନ୍ନତି ପାଇଁ କୃଷି କମିସନ ଗଢ଼ିଥିଲେ । ଲର୍ଡ ଲିନ୍‌ଲିଥଗୋ ଏହାର ସଭାପତି ଥିଲେ । ତାଙ୍କ ସମୟରେ ଶାରଦା ଆଇନ ଜାରି ହୋଇ ବାଲ୍ୟବିବାହ ବନ୍ଦ ହୋଇଥିଲା ଓ ଖ୍ରୀ: ୧୯୨୯ରେ ଭାରତ ଓ ଇଂଲଣ୍ଡ ମଧ୍ୟରେ ଉଡ଼ାଜାହାଜ ଚଳିବାର ବନ୍ଦୋବସ୍ତ ହୋଇଥିଲା ।

**ସାଇମନ୍ କମିସନ୍** :—ଭାରତରେ ମଣ୍ଟେଗ୍ୟୁ-ଚେମ୍‌ସ୍‌ଫୋର୍ଡ ଶାସନ କିପରି କାର୍ଯ୍ୟକାରୀ ହେଉଛି ଓ ଭାରତୀୟମାନେ ଅଧିକ କ୍ଷମତା ପାଇବାପାଇଁ କେତେଦୂର ଅଗ୍ରସର ହେଲେଣି ଏହା ଦେଖିବା ପାଇଁ ବିଲାତ ପାର୍ଲିଆମେଣ୍ଟ ଗୋଟିଏ ପ୍ରତିନିଧି ଦଳ ଖ୍ରୀ: ୧୯୨୮ ରେ ଭାରତକୁ ପଠାଇଥିଲେ । ଏହି ଦଳର ନେତା ସାର୍ ଜନ ସାଇମନ୍‌ଙ୍କ

ନାମାନୁସାରେ ଏହାର ନାମ ସାଇମନ୍ କମିସନ୍ ଥିଲା । ଏହାର ସାତ ଜଣ ସଭ୍ୟଙ୍କ ମଧ୍ୟରୁ କେହି ଭାରତୀୟ ହୋଇ ନଥିବାରୁ କଂଗ୍ରେସ ଏହାକୁ ବର୍ଜନ କରିଥିଲେ । ଏହାର ସଭ୍ୟମାନେ ଭାରତରେ ବୁଲି ବିଲାତକୁ ଯାଇ ପାର୍ଲିଆମେଣ୍ଟକୁ ଗୋଟିଏ ବିବରଣୀ ଦେଇଥିଲେ ।

ଔପନିବେଶିକ ସ୍ୱାୟତ୍ତ ଶାସନ ବିଲାତ ସରକାର ଭାରତକୁ ଦେବେ ବୋଲି ଇରୱିଇନ୍ ଘୋଷଣା କଲେ ମଧ୍ୟ ବିଲାତ ସରକାର ତାହା ଦେଲେ ନାହିଁ । ତେଣୁ ଖ୍ରୀ: ୧୯୨୯ ଡିସେମ୍ବର ମାସରେ ଲାହୋର ଅଧିବେଶନରେ ପୂର୍ଣ୍ଣ ସ୍ୱାଧୀନତା ଭାରତବାସୀଙ୍କର ଲକ୍ଷ୍ୟ ବୋଲି କଂଗ୍ରେସ ଘୋଷଣା କରିଥିଲେ ।

**ଲବଣ ସତ୍ୟାଗ୍ରହ** :—ଭାରତର ସ୍ୱାଧୀନତା ପାଇଁ ଇରୱିଇନ୍‌ଙ୍କ ସଙ୍ଗେ କଥାବାର୍ତ୍ତା କରି ନିରାଶ ହେବାରୁ ମହାତ୍ମା ଗାନ୍ଧି ଖ୍ରୀ: ୧୯୩୦ ର ଅପ୍ରେଲ୍ ମାସରେ ଆଇନ ଅମାନ୍ୟ କରି ଲବଣ ସତ୍ୟାଗ୍ରହ ଆରମ୍ଭ କଲେ । ଭାରତୀୟମାନଙ୍କର ଲୁଣମାରିବା ଅଧିକାର ଫେରାଇ ଆଣିବାପାଇଁ ମହାତ୍ମା ଗାନ୍ଧି ଦାଣ୍ଡିଠାରେ ଲୁଣ ମାରିଲେ । ଧୀରେ ଧୀରେ ଏ ଆନ୍ଦୋଳନ ଚାରିଆଡ଼େ ବ୍ୟାପିଲା । ଆମ ଓଡ଼ିଶାରେ ଇଞ୍ଚୁଡ଼ି ପ୍ରଭୃତି ସମୁଦ୍ର କୂପକୂଳ-ସ୍ଥାନମାନଙ୍କରେ ଆଇନ ଅମାନ୍ୟ କରି ଲୁଣ ମରାହୋଇ ବିକା ହେଲା । ଖଜଣା ଦେବା ବନ୍ଦ ହେଲା, ଖଜୁରୀ ଗଛ କଟାହେଲା, ଅବକାରୀ ଦୋକାନ ଆଗରେ ପିକେଟିଙ୍ଗ୍ ଚାଲିଲା ଓ ବିଦେଶୀ ଲୁଗା ବର୍ଜନ କରାଗଲା । ଇଂରେଜ ସରକାର କଂଗ୍ରେସକୁ ବେଆଇନ ଘୋଷଣାକରି ମହାତ୍ମା ଗାନ୍ଧି, ଅନ୍ୟାନ୍ୟ ନେତା ଓ ଶତ ଶତ କଂଗ୍ରେସକର୍ମୀଙ୍କୁ ଜେଲ୍ ଦେଲେ; ତଥାପି ଆନ୍ଦୋଳନ ଦବିଲା ନାହିଁ ।

**ପ୍ରଥମ ଗୋଲଟେବୁଲ ବୈଠକ** :—ଏହି ବୈଠକରେ କଂଗ୍ରେସ ଯୋଗ ନ ଦେଇ ସତ୍ୟାଗ୍ରହ ଚଳାଇଥିଲେ । ଏହାର କୌଣସି ସୁଫଳ ଫଳି ନ ଥିଲା ।

**ଗାନ୍ଧି-ଇରୱଇନ୍ ଚୁକ୍ତି** :—ପ୍ରଥମ ଗୋଲଟେବୁଲ୍ ବୈଠକରେ କିଛି ଫଳ ନ ହେବାରୁ ଓ ଲବଣ ସତ୍ୟାଗ୍ରହ ବଢ଼ିବାରୁ ଇର୍‌ୱଇନ୍ ଶାନ୍ତି ସ୍ଥାପନ କରିବାପାଇଁ ମହାତ୍ମା ଗାନ୍ଧିଙ୍କ ସହିତ ଖ୍ରୀ: ୧୯୩୧ ରେ ଗୋଟିଏ ଚୁକ୍ତି କରିଥିଲେ । ଏହାର ନାମ 'ଗାନ୍ଧି-ଇର୍‌ୱଇନ୍ ଚୁକ୍ତି' । ଏହି ଚୁକ୍ତି ଅନୁସାରେ ଦମନମୂଳକ ଆଇନ ଉଠାଯାଇ ଆନ୍ଦୋଳନ ବନ୍ଦ କରାଗଲା । ସମୁଦ୍ରକୂଳର ଲୋକମାନେ ଲୁଣ ମାରିବାର ଅଧିକାର ପାଇଲେ । କଂଗ୍ରେସ ଦ୍ୱିତୀୟ ଗୋଲ୍ ଟେବୁଲ୍ ବୈଠକରେ ଯୋଗ ଦେବାକୁ ରାଜି ହେଲେ ।

**ଲର୍ଡ ଉଇଲିଙ୍ଗଡନ୍** (ଖ୍ରୀ: ୧୯୩୧—ଖ୍ରୀ: ୧୯୩୬) :—ମହାତ୍ମା ଗାନ୍ଧି ଦ୍ୱିତୀୟ ଗୋଲ୍‌ଟେବୁଲ୍ ବୈଠକରେ ଯୋଗ ଦେଇ ନାନା ଭେଦନୀତି ହେତୁରୁ ନିରାଶ ହୋଇ ଫେରି ଖ୍ରୀ: ୧୯୩୨ରେ ପୁଣି ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କଲେ । ସରକାର ଆଗରୁ ପ୍ରସ୍ତୁତ ଥିବାରୁ ନେତାମାନଙ୍କୁ ବନ୍ଦୀ କଲେ । ସମୂହ ଜୋରିମାନା ଆଦାୟ କଲେ ଓ ଆଉ ଅନେକ ଦମନ-ମୂଳକ ଆଇନ ଦ୍ୱାରା ଆନ୍ଦୋଳନକୁ ଦବାଇ ଦେଲେ ।

ଖ୍ରୀ: ୧୯୩୨ ରେ ତୃତୀୟ ଗୋଲଟେବୁଲ୍ ବୈଠକ ବସିଲା । ସେହି ବୈଠକର ଆଲୋଚନା 'ହ୍ୱାଇଟ୍ ପେପର୍' ବା 'ଧଳା କାଗଜ' ଘୋଷଣା ନାମରେ ପ୍ରକାଶିତ ହେଲା ।

**ଖ୍ରୀ: ୧୯୩୫ର ଭାରତ ଶାସନ ଆଇନ** :—ଧଳା କାଗଜ ଘୋଷଣାକୁ ଭିତ୍ତି କରି ଭାରତ ଶାସନ ଆଇନ ପାର୍ଲିଅମେଣ୍ଟରେ ଗଢ଼ା ହୋଇଥିଲା । ଏହି ଆଇନ ଅନୁସାରେ ବ୍ରିଟିଶଭାରତ ଓ ଦେଶୀୟ ରାଜ୍ୟକୁ ମିଶାଇ ଭାରତୀୟ ରାଷ୍ଟ୍ର ସଂଘ ଗଢ଼ା ହେବାକୁ ସ୍ଥିର ହୋଇଥିଲା । ଏଥିରେ ଦେଶୀୟରାଜ୍ୟମାନେ ମିଶିବା ବାଧ୍ୟତାମୂଳକ ନ ଥିଲା । ପ୍ରାଦେଶିକ

ଶାସନରେ ନିର୍ବାଚିତ ମନ୍ତ୍ରୀମାନେ ବେଶୀ କ୍ଷମତା ପାଇବାପାଇଁ ସ୍ଥିର ହେଲା । ଓଡ଼ିଶା ଓ ସିନ୍ଧୁ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେବାପାଇଁ ଓ ବ୍ରହ୍ମଦେଶ ଭାରତରୁ ଅଲଗା ହେବାପାଇଁ ଘୋଷଣା କରାଯାଇଥିଲା ।

**ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ** :—ଖ୍ରୀ : ୧୯୩୫ର ଭାରତ ଶାସନ ଆଇନ ବଳରେ ଓଡ଼ିଶା ଓ ସିନ୍ଧୁ ଖ୍ରୀ : ୧୯୩୬ରେ ସ୍ୱତନ୍ତ୍ର ପ୍ରଦେଶ ହେଲେ, ଓ ବ୍ରହ୍ମଦେଶ ଭାରତରୁ ଅଲଗା ହେଲା ।

**ଭୂମିକମ୍ପ** :—ଖ୍ରୀ : ୧୯୩୪—୩୬ରେ ବିହାର, କ୍ୱେଟା ପ୍ରଭୃତି ସ୍ଥାନରେ ଭୂମିକମ୍ପ ହୋଇ ଅନେକ ସମ୍ପତ୍ତି, କୋଠାବାଡ଼ି ନଷ୍ଟ ହୋଇଥିଲା । ବହୁଲୋକ ପ୍ରାଣ ହରାଇଥିଲେ ଓ ନିରାଶ୍ରୟ ହୋଇ ବୁଲିଥିଲେ ।

**ପଞ୍ଚମ ଜର୍ଜଙ୍କ ରୌପ୍ୟ ଜୁବିଲି** :—ଖ୍ରୀ : ୧୯୩୫ରେ ପଞ୍ଚମ ଜର୍ଜଙ୍କର ରାଜତ୍ୱର ପଚିଶ ବର୍ଷ ପୂରିବାରୁ ରୌପ୍ୟ ଜୁବିଲି ପାଳିତ ହୋଇଥିଲା । ଖ୍ରୀ : ୧୯୩୬ ରେ ସେ ପ୍ରାଣତ୍ୟାଗ କରିବାରୁ ତାଙ୍କର ପୁଅ ଅଷ୍ଟମ ଏଡ୍‌ୱାର୍ଡ ଭାରତର ସମ୍ରାଟ୍ ହେଲେ ।

**ଲର୍ଡ ଲିନ୍‌ଲିଥ୍‌ଗୋ** (ଖ୍ରୀ : ୧୯୩୬—ଖ୍ରୀ : ୧୯୪୩) :— ସେ ଆଗରୁ ଏ ଦେଶରେ କୃଷି କମିସନ୍‌ର ସଭାପତି ଥିଲେ । ସେ କୃଷି ଓ ଗୋଜାତିର ଉନ୍ନତି କରିଥିଲେ । ଖ୍ରୀ : ୧୯୩୫ର ଭାରତ ଶାସନ ଆଇନ ଗଢ଼ିବାରେ ସାହାଯ୍ୟ କରିଥିବାରୁ ତାହାକୁ କାର୍ଯ୍ୟକାରୀ କରିବାପାଇଁ ସେ ବଡ଼ଲାଟ ହୋଇ ଆସିଥିଲେ ।

**ନୂତନ ସମ୍ରାଟ୍ ଷଷ୍ଠ ଜର୍ଜ** :—କେତେକ ବ୍ୟକ୍ତିଗତ କାରଣ ଯୋଗୁଁ ଅଷ୍ଟମ ଏଡ୍‌ୱାର୍ଡ ବ୍ରିଟିଶ୍ ରାଜଗାଦି ଛାଡ଼ିବାରୁ ତାଙ୍କର



ସାନଭାଇ ଷଷ୍ଠ ଜର୍ଜ ଉପାଧି ଧାରଣକରି ଖ୍ରୀ: ୧୯୩୭ ମଇ ମାସ ୧୨ ତାରିଖରେ ବ୍ରିଟିଶ୍ ରାଜଗାଦିରେ ବସିଥିଲେ ।

**ଖ୍ରୀ: ୧୯୩୫ ଶାସନ ସଂସ୍କାର ପ୍ରବର୍ତ୍ତନ** :—ଖ୍ରୀ: ୧୯୩୫ ଭାରତ ଶାସନ ଆଇନର ପ୍ରାଦେଶିକ ଶାସନ ଅଂଶଟି ଖ୍ରୀ: ୧୯୩୭ ଏପ୍ରିଲ୍ ପହିଲାଠାରୁ କାର୍ଯ୍ୟକାରୀ ହୋଇଥିଲେ ମଧ୍ୟ କେନ୍ଦ୍ର ଶାସନ ଅଂଶ ପୂର୍ବାହାରେ ସେହିଦିନ-ଠାରୁ କାର୍ଯ୍ୟକାରୀ ହୋଇ ନଥିଲା । ଏହି ଆଇନ ଅନୁସାରେ ପ୍ରାଦେଶିକ ଲାଟ୍‌ମାନେ ବଡ଼ଲାଟଙ୍କର ପୂର୍ବ ଅଧୀନ ନ ହୋଇ ସମ୍ରାଟଙ୍କ ପ୍ରତିନିଧି ରୂପେ ପ୍ରଦେଶମାନ ଶାସନ କଲେ । କେତେକ ସ୍ଥଳରେ ସେମାନେ ବଡ଼ଲାଟଙ୍କର ନିର୍ଦ୍ଦେଶ ମାନିଲେ । ଏହାକୁ ପ୍ରଭିନ୍‌ସିଆଲ୍ ଅଟୋନମି ବା ପ୍ରାଦେଶିକ ସ୍ୱତନ୍ତ୍ରତା କୁହାଯାଏ । ଏହି ଆଇନ ଅନୁସାରେ ଓଡ଼ିଶା, ସୀମାନ୍ତ, ପଞ୍ଜାବ, ସିନ୍ଧୁ ଓ ମଧ୍ୟପ୍ରଦେଶରେ ଗୋଟିଏ ଲେଖାଏଁ ବ୍ୟବସ୍ଥା ସଭା ରହିଲା । ଏହା ବ୍ୟତୀତ ଅନ୍ୟ ପ୍ରଦେଶମାନଙ୍କରେ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍ ଓ ଲେଜିସ୍‌ଲେଟିଭ୍ ଆସେମ୍ବ୍ଲି ନାମରେ ଦୁଇଟି ଲେଖାଏଁ ବ୍ୟବସ୍ଥା ସଭା ରହିଲା ।

ନିର୍ବାଚନ ପରେ ଲେଜିସ୍‌ଲେଟିଭ୍ ଆସେମ୍ବ୍ଲି (ବ୍ୟବସ୍ଥା ସଭା) ରେ ଯେଉଁ ଦଳର ସଭ୍ୟ ବେଶୀ ଥିଲେ ଲାଟ୍ ସେମାନଙ୍କ ମଧ୍ୟରୁ ମନ୍ତ୍ରୀ ବାଛି ସେମାନଙ୍କ ଦ୍ୱାରା ଶାସନ ଚଳାଇଲେ ।

ନିର୍ବାଚନ ପରେ ଓଡ଼ିଶା, ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ବମ୍ବେ, ସୀମାନ୍ତ-ପ୍ରଦେଶ, ଯୁକ୍ତପ୍ରଦେଶ ଓ ବିହାରରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ

କରାଯାଇଥିଲା । ଆମ ଓଡ଼ିଶାରେ ଶ୍ରୀ ବିଶ୍ୱନାଥ ଦାସ ମନ୍ତ୍ରୀମଣ୍ଡଳ ଗଠନ କରି ପ୍ରଧାନ ମନ୍ତ୍ରୀ ହୋଇଥିଲେ ।

**ରାଷ୍ଟ୍ର ସଂଘ ବିଚାରାଳୟ** :—ଖ୍ରୀଃ ୧୯୩୫ର ଭାରତ ଶାସନ ଆଇନର କେନ୍ଦ୍ର ଶାସନ ଅଂଶରୁ କେବଳ ରାଷ୍ଟ୍ର ସଂଘ ବିଚାରାଳୟ ସ୍ଥାପିତ ହୋଇଥିଲା । ରାଷ୍ଟ୍ର ସଂଘ ସରକାର ଓ ପ୍ରାଦେଶିକ ସରକାରମାନଙ୍କର ବିବାଦ ମୀମାଂସା କରିବା ଏହା'ର କାର୍ଯ୍ୟ ଥିଲା ।

**ଦ୍ୱିତୀୟ ମହାସମର ଓ କଂଗ୍ରେସ ମନ୍ତ୍ରୀଙ୍କ ଇସ୍ତଫା** :—ଖ୍ରୀଃ ୧୯୩୯ର ସେପ୍ଟେମ୍ବର ମାସରେ ଜର୍ମାନୀର ଏକଛତ୍ର ଶାସକ ହିଟ୍‌ଲର୍ ପୋଲଣ୍ଡ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ଇଂଲଣ୍ଡ ଓ ଫ୍ରାନ୍‌ସ୍ ପୋଲଣ୍ଡର ସ୍ୱାଧୀନତା ରକ୍ଷା ପାଇଁ ଓ ଗଣତନ୍ତ୍ର ବଞ୍ଚାଇ ରଖିବା ପାଇଁ ପୋଲଣ୍ଡକୁ ସାହାଯ୍ୟ ଦେଲେ । ଏହା କ୍ରମେ ଦ୍ୱିତୀୟ ମହାସମରରେ ପରିଣତ ହେଲା । ଭାରତର ବଡ଼ଲାଟ ପ୍ରାଦେଶିକ ମନ୍ତ୍ରୀମଣ୍ଡଳମାନଙ୍କର ମତ ନନେଇ ଭାରତ ବାହାରକୁ ସୈନ୍ୟ ପଠାଇଲେ । ପ୍ରାଦେଶିକ ମନ୍ତ୍ରୀମଣ୍ଡଳମାନଙ୍କର କୌଣସି କ୍ଷମତା ନ ଥିବାର ଜଣା ପଡ଼ିଗଲା । ତେଣୁ ଭାରତର ଜାତୀୟ କଂଗ୍ରେସ ଭାରତରେ ସ୍ୱାଧୀନତା ଓ ଗଣତନ୍ତ୍ର ପ୍ରତିଷ୍ଠା ଦାବି କରିଥିଲେ । କଂଗ୍ରେସ ଯୁକ୍ତି କଲେ, ଯଦି ଗଣତନ୍ତ୍ର ଓ ପୋଲଣ୍ଡର ସ୍ୱାଧୀନତା ରକ୍ଷା କରିବାପାଇଁ ଇଂରେଜ ସରକାର ଦ୍ୱିତୀୟ ମହାସମରରେ ଯୋଗ ଦେଲେ ତେବେ ସେ ପ୍ରଥମେ ତାଙ୍କ ଅଧୀନରେ ଥିବା ଭାରତରେ ଗଣତନ୍ତ୍ର ପ୍ରତିଷ୍ଠାକରି ଭାରତକୁ ସ୍ୱାଧୀନତା ଦେବା ଉଚିତ । ତା ପରିବର୍ତ୍ତେ ଗଣତନ୍ତ୍ର ନୀତି ବିରୁଦ୍ଧରେ ଲୋକପ୍ରତିନିଧିମାନଙ୍କର ପରାମର୍ଶ ନ ନେଇ ଯୁଦ୍ଧ ଘୋଷଣା କରିବା ବଡ଼ ଅନ୍ୟାୟ ହୋଇଛି । ପ୍ରତିବାଦସ୍ୱରୂପ କଂଗ୍ରେସ ମନ୍ତ୍ରୀମାନେ ଇସ୍ତଫା ଦେଲେ । ପ୍ରଦେଶମାନଙ୍କରେ ଲାଟମାନେ ଏକଛତ୍ର ଶାସନ ଚଳାଇଲେ ଓ ବ୍ୟବସ୍ଥାସଭା ବନ୍ଦ ରହିଲା । କଂଗ୍ରେସ ମନ୍ତ୍ରୀମଣ୍ଡଳ ନଥିବା ପ୍ରଦେଶମାନଙ୍କରେ ପୂର୍ବପରି ଶାସନ ଚାଲିଲା ।

**୧୯୪୦ରେ ବ୍ୟକ୍ତିଗତ ସତ୍ୟାଗ୍ରହ** :—ଖ୍ରୀ: ୧୯୪୦ର ନଭେମ୍ବର ମାସରେ ମହାତ୍ମା ଗାନ୍ଧିଙ୍କ ପରାମର୍ଶରେ କଂଗ୍ରେସ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ କଲେ । ଭାରତର ପୂର୍ଣ୍ଣ ସ୍ୱାଧୀନତା ଏହାର ଲକ୍ଷ୍ୟ ଥିଲା । କଂଗ୍ରେସ ନେତା ଓ କର୍ମୀମାନେ ଯୁଦ୍ଧରେ ସାହାଯ୍ୟ କରନାହିଁ ବୋଲି କହି ବନ୍ଦୀ ହେଲେ । ଖ୍ରୀ: ୧୯୪୧ରେ ବଡ଼ଲାଟ ନିଜର କାର୍ଯ୍ୟକାରୀ ସଭାରେ କେତେକ ନୂତନ ସଭ୍ୟ ନେଲେ ଓ ସତ୍ୟାଗ୍ରହୀ ବନ୍ଦୀମାନଙ୍କୁ ମୁକ୍ତ କରିଥିଲେ ।

**କ୍ରିପ୍‌ସ୍ ପ୍ରସ୍ତାବ**—ଖ୍ରୀ: ୧୯୪୧ରେ ଜାପାନ, ଇଂଲଣ୍ଡ ଓ ଆମେରିକା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି, ମାଳୟ, ସିଙ୍ଗାପୁର, ବର୍ମା ପ୍ରଭୃତି ଅଧିକାର କଲା ଓ ଭାରତ ଆଡ଼କୁ ମାଡ଼ି ଆସିଲା । ଭାରତୀୟମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ବ୍ରିଟିଶ ସରକାର ଖ୍ରୀ: ୧୯୪୨ରେ ସାର ଷ୍ଟାଫୋର୍ଡ କ୍ରିପ୍‌ସ୍ ନାମକ ଜଣେ ଇଂରେଜ ମନ୍ତ୍ରୀଙ୍କୁ କେତେଗୁଡ଼ିଏ ପ୍ରସ୍ତାବ ଦେଇ ଭାରତକୁ ପଠାଇଲେ । ଭାରତରେ ଔପନିବେଶିକ ସ୍ୱାୟତ୍ତ ଶାସନ ପ୍ରତିଷ୍ଠା କରିବା ପାଇଁ ସେ ପ୍ରସ୍ତାବ କରିଥିଲେ କିନ୍ତୁ ରାଜ୍ୟରକ୍ଷା ବିଭାଗ ବଡ଼ଲାଟଙ୍କ ହାତରେ ରହିବ ଓ ବଡ଼ଲାଟ ବ୍ରିଟିଶ ସରକାରଙ୍କଠାରେ ଦାୟୀ ରହିବେ ବୋଲି ସେ ପ୍ରସ୍ତାବ ଆଣିଥିଲେ । ତାଙ୍କର ଏହି ପ୍ରସ୍ତାବକୁ କୌଣସି ଦଳ ଗ୍ରହଣ କଲେ ନାହିଁ ।

**ହଲଓ୍ୱେଲ୍ ମନୁମେଣ୍ଟ ଅପସାରଣ** :—ସିରାଜଉଦ୍ଦୌଲାଙ୍କ ସମୟର ଅନ୍ଧକୂପ ହତ୍ୟା ମିଥ୍ୟା ବୋଲି କେତେକଙ୍କର ମତ । ତାହାକୁ ସତ୍ୟ ବୋଲି ପ୍ରମାଣ କରିବାକୁ କଲିକତାରେ ଲର୍ଡ କର୍ଜନ୍ ହଲୱେଲ ମନୁମେଣ୍ଟ ନାମରେ ଗୋଟିଏ ସ୍ମୃତିସ୍ତମ୍ଭ ନିର୍ମାଣ କରିଥିଲେ । ସୁଭାଷଚନ୍ଦ୍ର ବୋଷ ଓ ବହୁଲୋକ ଖ୍ରୀ: ୧୯୪୦ରେ ଏହି ସ୍ମୃତିସ୍ତମ୍ଭକୁ ଉଠାଇ ନେବାକୁ

ସତ୍ୟାଗ୍ରହ କରି ବନ୍ଦୀ ହେଲେ । ପରେ ଏହି ସ୍ୱତନ୍ତ୍ର ହଠାଇ ଦିଆଯାଇଥିଲା ।

**ଆଜାଦ ହିନ୍ଦ୍ ସରକାର ଗଠନ** :—୧୯୪୧ ଜାନୁୟାରୀ ୨୬ ତାରିଖ ଦିନ ସୁବାଷଚନ୍ଦ୍ର ଅତି କୌଶଳରେ ଭାରତରୁ ଖସି ପଳାଇଲେ । ସେ ଜର୍ମାନୀ ଯାଇ ଭାରତର ସ୍ୱାଧୀନତା ବିଷୟରେ ହିଟ୍‌ଲରଙ୍କ ସଙ୍ଗେ କଥାବାର୍ତ୍ତା କରିଥିଲେ । ସୁବାଷ ଚନ୍ଦ୍ର ସେଠାରେ **ଆଜାଦ ହିନ୍ଦ୍ ଫୌଜ** ବା ସ୍ୱାଧୀନ ଭାରତ ସେନାବାହିନୀ ଗଠନ କରିଥିଲେ । ସେଠାରୁ ସୁବାଷ-ଚନ୍ଦ୍ର ସିଙ୍ଗାପୁରକୁ ଯାଇଥିଲେ । ତାଙ୍କ ପୂର୍ବରୁ ସେଠାରେ ଜେନେରାଲ ମୋହନ ସିଂହ ମଧ୍ୟ ଅଜାଦ ହିନ୍ଦ୍ ଫୌଜ ଗଢ଼ିଥିଲେ । ଜର୍ମାନୀ, ଜାପାନ ପ୍ରଭୃତି ଇଂଲଣ୍ଡର ଶତ୍ରୁରାଜ୍ୟମାନେ ଏହି ସରକାରକୁ ସ୍ୱୀକାର କରିଥିଲେ । ଭାରତର ସବୁ ସମ୍ପ୍ରଦାୟର ଲୋକ ଏହି ସୈନ୍ୟବାହିନୀରେ ସ୍ଥାନ ପାଇ ସାମ୍ପ୍ରଦାୟିକତା ଭୁଲି ଯାଇଥିଲେ ।

**୧୯୪୨ ଅଗଷ୍ଟ ବିପ୍ଳବ** :—ଖ୍ରୀ: ୧୯୪୨ ଅଗଷ୍ଟ ଅଠ ତାରିଖରେ ବମ୍ବେଠାରେ ନିଖିଳ ଭାରତ କଂଗ୍ରେସ କମିଟି ଭାରତବାସୀଙ୍କ ହାତରେ ଶାସନଭାର ଦେଇ ଇଂରେଜମାନେ ଭାରତ ଛାଡ଼ି ଯିବାପାଇଁ ଇଂରେଜ ସରକାରଙ୍କଠାରେ ଦାବି କଲେ । ସେହି ରାତିରେ ମହାତ୍ମାଗାନ୍ଧି, କଂଗ୍ରେସ ନେତା ଓ କର୍ମୀମାନେ ବନ୍ଦୀହେଲେ । ସାରାଭାରତରେ ଉତ୍ତେଜନା ଓ ବିଦ୍ରୋହ ଦେଖାଗଲା । ଇଂରେଜ ସରକାର ଆନ୍ଦୋଳନ ଦବାଇବାକୁ ବ୍ୟୋମଯାନ ଓ କମାଣମାନଙ୍କରୁ ଲୋକମାନଙ୍କ ଉପରେ ଗୁଳି ବର୍ଷଣ କଲେ । ବିହାର, ଯୁକ୍ତପ୍ରଦେଶ ଓ ବମ୍ବେରେ ଏହି ବିଦ୍ରୋହ ବିଶାଳ ଆକାର ଧାରଣ କରିଥିଲା । ବହୁ ସ୍ଥାନରେ ଇଂରେଜ ସରକାରଙ୍କୁ ଅଚଳ କରିବାପାଇଁ ସମାନ୍ତରାଳ ସରକାରମାନ ଗଢ଼ାହେଲା । ଗୁଳି ଚଳାହେଲେ ମଧ୍ୟ ଏହି ବିଦ୍ରୋହ ଓଡ଼ିଶାରେ କେତେକ ପରିମାଣରେ ବ୍ୟାପିଥିଲା ।

## ଲର୍ଡ ଊଆଭେଲ (ଖ୍ରୀ: ୧୯୪୩—ଖ୍ରୀ: ୧୯୪୭)

**ଅଜାଦ ହିନ୍ଦ୍ ଫୌଜର ଭାରତ ଆକ୍ରମଣ** :—ଅଜାଦ ହିନ୍ଦ୍ ଫୌଜକୁ ଜାପାନ ଅସ୍ତ୍ରଶସ୍ତ୍ର ସାହାଯ୍ୟ କରିଥିଲା । ସେମାନେ ଖ୍ରୀ: ୧୯୪୩ରେ ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜ ଦଖଲ କରିଥିଲେ ଓ 'ଦିଲ୍ଲୀ ଚଲୋ' ଧ୍ୱନି ଦେଇ ବ୍ରହ୍ମଦେଶରୁ ଭାରତ ଆକ୍ରମଣ କରିଥିଲେ । ଇମ୍ଫାଲ୍‌ଠାରେ ଇଂରେଜ ସୈନ୍ୟମାନଙ୍କ ସହିତ ସେମାନଙ୍କର ଭୀଷଣ ଯୁଦ୍ଧ ହୋଇଥିଲା । ଏହି ସମୟରେ ଜାପାନ ଦୁର୍ବଳ ହୋଇଯିବାରୁ ଆଉ ସେମାନଙ୍କୁ ସାହାଯ୍ୟ ଦେଇ ପାରିଲା ନାହିଁ



ଓ ସେମାନେ ପରାସ୍ତ ହୋଇ ବ୍ରହ୍ମଦେଶକୁ ଫେରିଗଲେ ।

**ଜାପାନର ଆତ୍ମସମର୍ପଣ**:—ଜାପାନ ଉପରେ ପରମାଣୁ ବୋମା ପଡ଼ି ବହୁଲୋକ ମରିବାରୁ ଜାପାନ ଖ୍ରୀ: ୧୯୪୫ ଅଗଷ୍ଟ ୧୫ ତାରିଖରେ ଆତ୍ମସମର୍ପଣ କଲା । ଦ୍ୱିତୀୟମହାସମର ଶେଷ ହେଲା ।

**ଦ୍ୱିତୀୟ ମହାସମରର ପ୍ରଭାବ** :—ଦ୍ୱିତୀୟ ମହାସମରରେ ବହୁତ ଧନଜନ କ୍ଷୟ କରି ଇଂରେଜମାନେ ଜୟଲାଭ କରିଥିଲେ । ସେଥିପାଇଁ ସେମାନେ ପୃଥିବୀରେ ଆଉ ପୂର୍ବପରି ଶକ୍ତିଶାଳୀ ହୋଇ ରହିପାରିଲେ ନାହିଁ । ପୃଥିବୀରେ ଆମେରିକା ଓ ରୁଷିଆ ସବୁଠାରୁ ଶକ୍ତିଶାଳୀ ହେଲେ । ଯୁଦ୍ଧ ହେତୁରୁ କୃଷି ବାଣିଜ୍ୟରେ ବହୁ ବାଧା ଘଟିଲା । ଖାଦ୍ୟ ଓ ନିତ୍ୟବ୍ୟବହାର୍ଯ୍ୟ ଜିନିଷର ଦାମ୍ ଖୁବ୍ ବେଶୀ ହୋଇଯାଇଥିଲା । ସେ ମୂଲ୍ୟବୃଦ୍ଧି ବର୍ତ୍ତମାନ ସୁଦ୍ଧା ଚାଲିଛି ।

**୧୯୪୩ ଦୁର୍ଭିକ୍ଷଃ**—ଯୁଦ୍ଧ ଭିତରେ ଜିନିଷପତ୍ରର ଦାମ ବଢ଼ିଥିଲା । ଖ୍ରୀଃ ୧୯୪୨ ନଭେମ୍ବର ମାସରେ ଗୋଟିଏ ଭୀଷଣ ବନ୍ୟା ହୋଇ ଓଡ଼ିଶାର ଉପକୂଳ ଅଞ୍ଚଳରେ ଓ ମେଦିନୀପୁର ଜିଲ୍ଲାରେ ଧାନ ଫସଲ ନଷ୍ଟ ହୋଇଗଲା ଓ ବହୁ ଘରଦ୍ୱାର ଭାଙ୍ଗିଗଲା । ଫଳରେ ବଙ୍ଗଳା ଓ ଓଡ଼ିଶାରେ ଦୁର୍ଭିକ୍ଷ ଦେଖାଦେଲା । ବଙ୍ଗଳାରୁ ପଚାଶ ଲକ୍ଷ ଲୋକ ଏହି ଦୁର୍ଭିକ୍ଷରେ ମରିଥିଲେ ।

**କଂଗ୍ରେସ ସହିତ ସରକାରଙ୍କର ମିଳାମିଶା** :—ଯୁଦ୍ଧ ପରେ ଆଜାଦ୍ ହିନ୍ଦ୍ ଫୌଜର ବୀରତ୍ୱ କାହାଣୀ ଭାରତରେ ପ୍ରଚାରିତ ହେବାରୁ ଭାରତୀୟମାନଙ୍କ ମଧ୍ୟରେ ଏକ ନୂତନ ଜାତୀୟତା ଜନ୍ମିଥିଲା । ସୈନ୍ୟ-ମାନଙ୍କ ମଧ୍ୟରେ ବିଦ୍ରୋହ ଦେଖାଗଲା । ଯୁଦ୍ଧପରେ ରକ୍ଷଣଶୀଳ ଦଳର ନେତାଙ୍କ ପରିବର୍ତ୍ତେ ଶ୍ରମିକ ଦଳର ନେତା କ୍ଲିମେଣ୍ଟ୍ ଆଟ୍ଲି ବିଲାତରେ ଶ୍ରମିକ ସରକାର ଗଠନ କଲେ । ସେଥିପାଇଁ ବ୍ରିଟିଶ ସରକାରଙ୍କ ଭାରତ ପ୍ରତି ମତଗତି ବଦଳିଗଲା ଓ ବ୍ରିଟିଶ ସରକାର ଭାରତର ଭବିଷ୍ୟତ ଶାସନ ସମ୍ପର୍କରେ କଥାବାର୍ତ୍ତା କରିବାକୁ ଆରମ୍ଭ କଲେ । ପ୍ରଦେଶମାନଙ୍କରେ ନିର୍ବାଚନ ଆରମ୍ଭ ହେଲା ଓ ହିନ୍ଦୁପ୍ରଧାନ ପ୍ରଦେଶମାନଙ୍କରେ କଂଗ୍ରେସ ସଭ୍ୟମାନେ ବହୁ ସଂଖ୍ୟାରେ ଭୋଟ ପାଇଲେ ।

**ବ୍ରିଟିଶ୍ ମନ୍ତ୍ରୀ ପରିଷଦ ମିଶନ** :—ଖ୍ରୀ : ୧୯୪୫ ରେ ଜୁନ ୧୪ ତାରିଖ ଦିନ ବଡ଼ଲାଟ ଲର୍ଡ଼ ୱାଭେଲ୍ ବ୍ରିଟିଶ୍ ପାର୍ଲିଅମେଣ୍ଟ୍‌ର ମତ ନେଇ ଭାରତର ଅସ୍ଥାୟୀ ଜାତୀୟ ସରକାର ଗଠନ କରିବାପାଇଁ ଗୋଟିଏ ଯୋଜନା ପ୍ରକାଶ କଲେ । ବିଭିନ୍ନ ରାଜନୈତିକ ଦଳର ନେତାମାନେ ବଡ଼ଲାଟଙ୍କ ନିମନ୍ତ୍ରଣରେ ସିମଲାଠାରେ ଏହି ଯୋଜନାକୁ ବିଚାର କରିବାପାଇଁ ଗୋଟିଏ ସଭା କଲେ । କିନ୍ତୁ ଫଳ ହେଲା ନାହିଁ । ଖ୍ରୀ : ୧୯୪୬ ମାର୍ଚ୍ଚ ୨୩ ତାରିଖରେ ବିଲାତି ପାର୍ଲିଅମେଣ୍ଟର ତିନିଜଣ ମନ୍ତ୍ରୀ

ଶାନ୍ତିପୂର୍ଣ୍ଣଭାବରେ କ୍ଷମତା ହସ୍ତାନ୍ତର କରିବାପାଇଁ ଭାରତ ଆସିଥିଲେ । ଏମାନଙ୍କୁ 'ବ୍ରିଟିଶ ମନ୍ତ୍ରୀପରିଷଦ ମିଶନ' ବୋଲାଯାଏ । ମୁସଲିମ୍ ଲିଗ୍ ଭାରତକୁ ଭାଗ ଭାଗ କରିବାପାଇଁ ଦାବି କରିଥିଲେ । କଂଗ୍ରେସ ସହିତ ତାଙ୍କର ମତ ମିଳୁ ନଥିଲା । ବହୁ ଯୁକ୍ତି ପରେ ଏହି ଦୁଇଦଳ ମିଳିତ ହୋଇ ଅସ୍ଥାୟୀ ସରକାର ଗଠନ କଲେ । ପଣ୍ଡିତ ଜବାହରଲାଲ୍ ନେହରୁ ଶାସନ ଭାର ଗ୍ରହଣ କଲେ । ଭାରତର ଭବିଷ୍ୟତ ଶାସନ ଶୃଙ୍ଖଳା ଗଠନ କରିବାପାଇଁ ଗୋଟିଏ 'ଶାସନ ବିଧାୟକ ସଭା' ଗଠିତ ହୋଇଥିଲା । ଏହିଠାରେ ଭାରତର ଜାତୀୟ ଆନ୍ଦୋଳନର ଏକ ଅଧ୍ୟାୟ ଶେଷ ହେଲା ।

**ସାମ୍ପ୍ରଦାୟିକ ଗଣ୍ଡଗୋଳ** :—ମୁସଲମାନ୍ ନେତାମାନେ ମୁସଲମାନ୍ ବହୁଳ ଅଞ୍ଚଳମାନଙ୍କୁ ନେଇ ପାକିସ୍ଥାନ ଗଠନ କରିବା ପାଇଁ ମୁସଲମାନ୍‌ମାନଙ୍କୁ ମତାଇଥିଲେ । ଏହି ସାମ୍ପ୍ରଦାୟିକତା ପ୍ରଭାବରେ ବଙ୍ଗ,



ବିହାର ଓ ପଞ୍ଜାବରେ ହିନ୍ଦୁ ଓ ମୁସଲମାନ୍‌ମାନଙ୍କ ମଧ୍ୟରେ ଗଣ୍ଡଗୋଳ ସୃଷ୍ଟି ହେଲା । ବହୁତ ହିନ୍ଦୁ ଓ ମୁସଲମାନ୍ ପ୍ରାଣ ହରାଇଲେ । ହତ୍ୟା ଓ ଲୁଣ୍ଠନ ଗୁରୁତର ଆକାର ଧାରଣ କଲା । ଲର୍ଡ଼ ଉଆଭେଲ୍ ଅବସ୍ଥାକୁ ସମ୍ଭାଳି ନ ପାରିବାରୁ ବିଲାତ ସରକାର ତାଙ୍କୁ ଭାରତରୁ ଡକାଇ ନେଇଥିଲେ ।

**ଲର୍ଡ ମାଉଣ୍ଟବାଟେନ** (ଖ୍ରୀ: ୧୯୪୭—ଖ୍ରୀ: ୧୯୪୮) :—

ଲର୍ଡ ଉଆଭେଲଙ୍କ ପରେ ଲର୍ଡ଼ ମାଉଣ୍ଟବାଟେନ୍ ଭାରତର ବଡ଼ଲାଟ



ହୋଇ ଆସିଲେ । ଭୀଷଣ ସାମ୍ପ୍ରଦାୟିକତାରୁ ଦେଶକୁ ରକ୍ଷା କରିବାପାଇଁ କଂଗ୍ରେସ ନେତାମାନେ ଭାରତକୁ ଭାଗ ଭାଗ କରିବାକୁ ରାଜି ହୋଇଥିଲେ ।

**ଭାରତ ସ୍ୱାଧୀନତା ଆଇନ** :—୧୯୪୭ ରେ ଭାରତ ସ୍ୱାଧୀନତା ଆଇନ ବିଲାତ ପାର୍ଲିଆମେଣ୍ଟରେ ଚଢ଼ ହୋଇଥିଲା । ଏହି ଆଇନ ବଳରେ ଭାରତବର୍ଷ ପାକିସ୍ଥାନ ଓ ଭାରତ ଯୁକ୍ତରାଷ୍ଟ୍ରରେ ବିଭକ୍ତ ହୋଇଥିଲା । ସିନ୍ଧୁପ୍ରଦେଶ, ଉତ୍ତରପଶ୍ଚିମ ସୀମାନ୍ତ ପ୍ରଦେଶ, ପଶ୍ଚିମପଞ୍ଜାବ ଓ ପୂର୍ବବଙ୍ଗ ପାକିସ୍ଥାନରେ ରହିଲା, ଭାରତବର୍ଷର ଅନ୍ୟ ଅବଶିଷ୍ଟ ଅଂଶ ଭାରତ ଯୁକ୍ତରାଷ୍ଟ୍ରରେ ରହିଲା । ଏହି ଦୁଇଟି ରାଜ୍ୟ ଔପନିବେଶିକ ସ୍ୱାଧୀନତା ପାଇଲେ । ସେମାନେ ଇଚ୍ଛା କଲେ ସ୍ୱାଧୀନ ହେବେ ବୋଲି ମଧ୍ୟ ବ୍ୟବସ୍ଥା ହେଲା । ଲର୍ଡ ମାଉଣ୍ଟବାଟେନ୍ ଭାରତର ଓ



କ୍ୱାଏଦ୍-ଇ-ଆଜାମ ମହମ୍ମଦ ଅଲ୍ ଜିନା ପାକିସ୍ଥାନର ବଡ଼ଲାଟ ହେଲେ । ଭାରତ କେନ୍ଦ୍ର ସରକାରର ପଣ୍ଡିତ **ଜବାହରଲାଲ ନେହେରୁ** ପ୍ରଧାନ ମନ୍ତ୍ରୀ ଓ **ମାନ୍ୟବର ସର୍ଦ୍ଦାର ବଲ୍ଲଭଭାଇ ପଟେଲ** ସହକାରୀ ପ୍ରଧାନ ମନ୍ତ୍ରୀ ହେଲେ । ମାନ୍ୟବର **ଲିଆକତ** ଅଲ୍ ଖାଁ ପାକିସ୍ଥାନର ପ୍ରଧାନ ମନ୍ତ୍ରୀ ହେଲେ । ହିନ୍ଦୁସ୍ଥାନ ଓ ପାକିସ୍ଥାନ ପାଇଁ ଦୁଇଟି ଭିନ୍ନ ଶାସନ ବିଧାନସଭା ଗଠିତ ହେଲା । ଶ୍ରୀଯୁକ୍ତ ରାଜେନ୍ଦ୍ର ପ୍ରସାଦ ଭାରତ ଶାସନ ବିଧାନସଭ

ସଙ୍ଘର ସଭାପତି ହେଲେ । ଖ୍ରୀ: ୧୯୪୭ ଅଗଷ୍ଟ ପନ୍ଦର ତାରିଖ ଭାରତର ସ୍ୱାଧୀନତା ଦିବସରୂପେ ମହାସମାରୋହରେ ପାଳିତ ହୋଇଥିଲା ।

**ମହାତ୍ମା ଗାନ୍ଧିଙ୍କ ହତ୍ୟା** :—ମହାତ୍ମା ଗାନ୍ଧିଙ୍କ ତ୍ୟାଗ, ଅହିଂସାବ୍ରତ, ସାଧନା ଓ ସତ୍ୟାଗ୍ରହ ଫଳରେ ଭାରତ ସ୍ୱାଧୀନ ହେଲା । ଘୋର ଦୁଃଖର ବିଷୟ ତାଙ୍କର ତ୍ୟାଗ ଓ ସାଧନା କଥା ଭୁଲିଯାଇ ଜଣେ ଆତତାୟୀ ଖ୍ରୀ: ୧୯୪୮ ଜାନୁୟାରୀ ୩୦ ତାରିଖରେ ତାଙ୍କୁ ହତ୍ୟା କଲା । ତାଙ୍କ ମୃତ୍ୟୁରେ ଭାରତର ଅପୂରଣୀୟ କ୍ଷତି ହୋଇଅଛି ।

**ଦେଶୀୟ ରାଜ୍ୟ ମିଶ୍ରଣ** :—ଇଂରେଜମାନେ ଭାରତକୁ କ୍ଷମତା ହସ୍ତାନ୍ତର କରିବା ପରେ ଦେଶୀୟରାଜ୍ୟମାନେ ସ୍ୱାଧୀନତା ଦାବି କରିଥିଲେ ଓ ଭାରତ ସରକାରଙ୍କର ସେମାନେ ଅଧୀନ ନୁହନ୍ତି ବୋଲି ଘୋଷଣା କଲେ । ଭାରତର ଉପପ୍ରଧାନ ମନ୍ତ୍ରୀ ମାନ୍ୟବର ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କର ଚେଷ୍ଟାରେ ଦେଶୀୟ ରାଜ୍ୟଗୁଡ଼ିକ ଭାରତ ୟୁନିୟନରେ ମିଶିଅଛନ୍ତି । ହାଇଦ୍ରାବାଦ ଭାରତ ୟୁନିଅନରେ ନ ମିଶିବାରୁ ଭାରତ ସରକାର ହାଇଦ୍ରାବାଦ ବିରୁଦ୍ଧରେ ଯୁଦ୍ଧ କରିଥିଲେ । ହାଇଦ୍ରାବାଦର ନିଜାମ ଖ୍ରୀ: ୧୯୪୮ ସେପ୍ଟେମ୍ବର ମାସରେ ଆତ୍ମସମର୍ପଣ କରିବାରୁ ହାଇଦ୍ରାବାଦ ଡିସେମ୍ବର ୧୯ ତାରିଖରେ ଭାରତରେ ମିଶିଛି । କାଶ୍ମୀର ମଧ୍ୟ ଅସ୍ଥାୟୀଭାବରେ ଭାରତରେ ମିଶିଛି । କାଶ୍ମୀର ପାଇଁ ଭାରତ ଓ ପାକିସ୍ଥାନ ମଧ୍ୟରେ ଯୁଦ୍ଧ ଲାଗିଥିଲା । ନିରାପତ୍ତା ପରିଷଦର ଚେଷ୍ଟାରେ ଖ୍ରୀ: ୧୯୪୯ ଜାନୁୟାରୀ ମାସରେ କାଶ୍ମୀର ଯୁଦ୍ଧ ବନ୍ଦ ହୋଇଅଛି ।

**ଆଶ୍ରୟପ୍ରାର୍ଥୀ ସମସ୍ୟା** :—ଭାରତ ଭାଗ ଭାଗ ହେବା ଫଳରେ ବହୁତ ହିନ୍ଦୁ ପାକିସ୍ଥାନରେ ରହିଗଲେ । ସେମାନେ ସେଠାରେ ରହି ନ ପାରିବାରୁ ଭାରତକୁ ବହୁ ସଂଖ୍ୟାରେ ପଳାଇ ଆସିଲେ । ଭାରତସରକାର ସେମାନଙ୍କୁ ଥଇଥାନ କରିବାପାଇଁ କୋଟି କୋଟି ଟଙ୍କା ଖର୍ଚ୍ଚ କରୁଅଛନ୍ତି ।

**ଶାସନ ବିଧାୟକ ସଭାର କାର୍ଯ୍ୟ** :—ଶାସନ ବିଧାୟକ ସଭା ଭାରତ ପାଇଁ ଗୋଟିଏ ନୂତନ ଶାସନ ଖସଡ଼ା ଗଢ଼ିଛନ୍ତି । ଏହାଦ୍ୱାରା ଭାରତକୁ ସାର୍ବଭୌମ ସ୍ୱାଧୀନ ଗଣତନ୍ତ୍ର ବୋଲି ଘୋଷଣା କରାଯାଇଛି । ଭାରତର ଜନସାଧାରଣ ଏ ଦେଶରେ ମାଲିକ ବୋଲି ସ୍ୱୀକାର କରାଯାଇଛି । ଏହି ନୂତନ ଶାସନ ଖସଡ଼ା କାର୍ଯ୍ୟକାରୀ ହେଲେ ଭାରତ ପାର୍ଲିଆମେଣ୍ଟ ଦୁଇ ଭାଗରେ ବିଭକ୍ତ ହେବ । ପ୍ରଥମଟିର ନାମ କାଉନ୍‌ସିଲ ଅଫ୍ ଷ୍ଟେଟ୍‌ସ୍ ବା ଉପର ବ୍ୟବସ୍ଥା ସଭା, ଦ୍ୱିତୀୟଟିର ନାମ କାଉନ୍‌ସିଲ ଅଫ୍ ଦି ପିପିଲ ବା ନିମ୍ନ ବ୍ୟବସ୍ଥା ସଭା । ଉପର ବ୍ୟବସ୍ଥା ସଭାରେ ୨୫୦ ଜଣ ସଭ୍ୟ ରହିବେ ।

ନିମ୍ନ ବ୍ୟବସ୍ଥା ସଭାରେ ୫୦୦ ରୁ ବେଶୀ ସଭ୍ୟ ରହିବେ ନାହିଁ । ସେମାନେ ପ୍ରତି ପାଞ୍ଚବର୍ଷରେ ଥରେ ଲେଖାଏଁ ସାବାଳକ ଭୋଟଦ୍ୱାରା ନିର୍ବାଚିତ ହେବେ ।

ଶାସନତନ୍ତ୍ର ଚଳାଇବା ଭାର ଜଣେ ରାଷ୍ଟ୍ରପତି ବା ପ୍ରେସିଡେଣ୍ଟଙ୍କ ଉପରେ ନ୍ୟସ୍ତ ରହିବ । ସେ ପାଞ୍ଚବର୍ଷରେ ଥରେ ନିର୍ବାଚିତ ହେବେ । ଉପର ଓ ତଳ ବ୍ୟବସ୍ଥା ସଭାର ସଭ୍ୟମାନେ ଓ ପ୍ରାଦେଶିକ ବ୍ୟବସ୍ଥା ସଭାର ପ୍ରତିନିଧିମାନେ ମିଶି ରାଷ୍ଟ୍ରପତି ନିର୍ବାଚନ କରିବେ । ଗୋଟିଏ ମନ୍ତ୍ରୀସଭା ତାଙ୍କୁ ଶାସନ ଚଳାଇବାରେ ସାହାଯ୍ୟ କରିବେ ।

• ସମୁଦାୟ ଦେଶଟି କେତେଗୁଡ଼ିଏ ଷ୍ଟେଟ୍ ବା ପ୍ରଦେଶରେ ବିଭକ୍ତ ହେବ । ପ୍ରତି ପ୍ରଦେଶରେ ଗୋଟିଏ ବା ଦୁଇଟି ବ୍ୟବସ୍ଥା ସଭା ରହିବ । ନିମ୍ନ ବ୍ୟବସ୍ଥା ସଭାରେ ୬୦ରୁ କମ୍ ବା ୩୦୦ରୁ ବେଶୀ ସଭ୍ୟ ରହିବେ ନାହିଁ । ସେମାନେ ସାବାଳକ ଭୋଟଦ୍ୱାରା ପ୍ରତି ପାଞ୍ଚବର୍ଷରେ ନିର୍ବାଚିତ ହେବେ । ପ୍ରତି ପ୍ରଦେଶରେ ଜଣେ ଲେଖାଏଁ ଲାଟ ରହିବେ । ନୂଆ ଶାସନ ଖସଡ଼ା ଖ୍ରୀ: ୧୯୫୦ ଜାନୁୟାରୀ ୨୬ତାରିଖଠାରୁ କାର୍ଯ୍ୟକାରୀ ହେଲା ।

**ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ (ଖ୍ରୀ: ୧୯୪୮) :—** ଲର୍ଡ୍ ମାଉଣ୍ଟବାଟେନ୍‌ଙ୍କ ପରେ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ଖ୍ରୀ: ୧୯୪୮ ଜୁନ ୨୧ ତାରିଖଠାରୁ ଭାରତର ବଡ଼ଲାଟ ହୋଇଛନ୍ତି । ସେ ଭାରତୀୟମାନଙ୍କ ମଧ୍ୟରୁ ସର୍ବପ୍ରଥମ ଓ ସର୍ବଶେଷ ବଡ଼ଲାଟ ।



**କମନ୍‌ୱେଲଥ୍ ଓ ଭାରତ :—** କମନ୍‌ୱେଲଥ୍ ଦେଶମାନଙ୍କର ସମ୍ମିଳନୀ ଖ୍ରୀ: ୧୯୪୯ ଅକ୍ଟୋବର ମାସରେ ହୋଇଥିଲା । ପଣ୍ଡିତ ଜବାହରଲାଲ ନେହରୁ ଏହି ସମ୍ମିଳନୀରେ ଯୋଗ ଦେଇଥିଲେ । ଭାରତ କମନ୍‌ୱେଲଥ୍‌ରେ ରହିବ କି ନାହିଁ ବୋଲି ପ୍ରଶ୍ନ ଉଠିଲା । ସେ ମତ ପ୍ରକାଶ କଲେ ଭାରତ ସାର୍ବଭୌମ ସ୍ୱାଧୀନ ରାଷ୍ଟ୍ରତନ୍ତ୍ର ହେଲେ ବ୍ରିଟିଶ ରାଜାଙ୍କୁ ମାନିବା ସମ୍ଭବ ହେବ ନାହିଁ । ତେଣୁ ଭାରତ କମନ୍‌ୱେଲଥ୍ ସଙ୍ଗେ ସଦ୍‌ଭାବ ରଖିବ । ଏବେ ଶାସନ ବାଧାମୁକ୍ତ ସହାର ନିଷ୍ପତ୍ତିରେ ଭାରତ କମନ୍‌ୱେଲଥ୍ ଭିତରେ ରହିଛି ।

**ନିରାପତ୍ତା ପରିଷଦରେ ଭାରତ :—** ନିରାପତ୍ତା ପରିଷଦ ପୃଥିବୀର ଶାନ୍ତି ସ୍ଥାପନ କରିବାପାଇଁ ଓ ଜାତି ଜାତି ମଧ୍ୟରେ ବିବାଦ ମେଣ୍ଟାଇବା ପାଇଁ ସ୍ଥାପିତ ହୋଇଅଛି । ସେଥିରେ ଆମେରିକା, ବ୍ରିଟେନ, ଫ୍ରାନ୍ସ, ରୁଷିଆ ଓ ଚୀନ ଏହି ପାଞ୍ଚଦେଶରୁ ସ୍ଥାୟୀ ସଭ୍ୟ ଅଛନ୍ତି । ସେଥିରେ ଅନ୍ୟ ଛଅଟି ଅସ୍ଥାୟୀ ସଭ୍ୟ ନିର୍ବାଚିତ ହୋଇ ଦୁଇବର୍ଷ ରହନ୍ତି ।

ଖ୍ରୀ: ୧୯୪୯ ରେ ଏହି ଅସ୍ଥାୟୀ ସଭ୍ୟମାନଙ୍କର ନୂତନ ନିର୍ବାଚନରେ ଭାରତ ଅଧିକ ସଂଖ୍ୟକ ଭୋଟପାଇ ଜୟଯୁକ୍ତ ହୋଇଛି ।

**ଭାରତର ବୈଦେଶିକ ନୀତି** :—ପୃଥିବୀରେ ଶାନ୍ତି ସ୍ଥାପନ କରିବା ଭାରତର ଲକ୍ଷ୍ୟ । କୌଣସି ଦେଶମାନଙ୍କର ମେଣ୍ଟ ଭିତରେ ପଶି ଅନ୍ୟ ଦେଶର ମେଣ୍ଟମାନଙ୍କ ବିରୁଦ୍ଧରେ ଯିବା ଓ ଅଗଭର ହୋଇ କୌଣସି ଦେଶ ଆକ୍ରମଣ କରିବା ଭାରତର ଲକ୍ଷ୍ୟ ନୁହେଁ ।

**ଭାରତର ଆଭ୍ୟନ୍ତରୀଣ ସମସ୍ୟା** :—ଖାଦ୍ୟାଭାବ, ଶାନ୍ତି ଶୃଙ୍ଖଳା, ମୁଦ୍ରାସ୍ଫୀତି, ଦୁର୍ନୀତି, ନିବାରଣ, ଶିକ୍ଷା ଓ ଅନେକ ଜନହିତକର ଯୋଜନା ଭାରତ ସରକାରଙ୍କର ପ୍ରଧାନ ସମସ୍ୟା ହୋଇଛି । ଭାରତ ସରକାର ଏହି ସମସ୍ୟାମାନଙ୍କର ସମାଧାନ ପାଇଁ ତତ୍ପର ଅଛନ୍ତି ।

---

# ସପ୍ତତ୍ରିଂଶ ଅଧ୍ୟାୟ

## ନୂତନ ଓଡ଼ିଶା ପ୍ରଦେଶ

ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଓଡ଼ିଶା ପ୍ରଦେଶ ବିସ୍ତୃତ ଥିଲା । ସେଠାରେ ହିନ୍ଦୁ ରାଜାମାନେ ରାଜୁତି କରୁଥିଲେ । ଆକବରଙ୍କର ସମୟରେ ପ୍ରଥମେ ଓଡ଼ିଶା ମୋଗଲ ସାମ୍ରାଜ୍ୟଭୁକ୍ତ ହେଲା । ମୋଗଲ ସମ୍ରାଟ୍‌ମାନେ ଦୁର୍ବଳ ହୋଇଯିବାରୁ ଓଡ଼ିଶା ବଙ୍ଗ ନବାବଙ୍କ ଅଧୀନ ହୋଇଥିଲା । ମରହଟ୍ଟାମାନେ ବଙ୍ଗ ନବାବଙ୍କଠାରୁ କଟକ, ପୁରୀ ଓ ବାଲେଶ୍ୱର ଛଡ଼ାଇ-ନେବାରୁ ମେଦନୀପୁର ସେହିଦିନଠାରୁ ବଙ୍ଗଳାରେ ରହିଗଲା । ଖ୍ରୀ: ୧୮୦୩ ରେ ଇଂରେଜମାନେ ମରହଟ୍ଟାମାନଙ୍କଠାରୁ କଟକ, ପୁରୀ, ବାଲେଶ୍ୱର ଓ ତାହା ନିକଟରେ ଥିବା ଗଡ଼ଜାତମାନ ଅଧିକାର କଲେ ।

ଚିଲ୍‌କାର ଦକ୍ଷିଣରୁ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟ ଗୋଲ୍‌କୁଣ୍ଡାର ସୁଲତାନ ଖ୍ରୀଃ ୧୫୭୧ ରେ ଓଡ଼ିଶାର ରାଜାଙ୍କଠାରୁ ଛଡ଼ାଇ ନେଇଥିଲେ । ତାହା କାଳକ୍ରମେ ହାଇଦ୍ରାବାଦର ନିଜାମ ଓ ଫରାସୀମାନଙ୍କ ହାତକୁ ଗଲା । ଇଂରେଜମାନେ ତାହା ଫରାସୀମାନଙ୍କଠାରୁ ଅଧିକାର କରି ମାନ୍ଦ୍ରାଜ ପ୍ରଦେଶରେ ରଖିଲେ ।

ଏହି ଦକ୍ଷିଣ ଅଞ୍ଚଳ ସ୍ୱାଧୀନଭାବରେ ଖ୍ରୀଃ ୧୮୨୦ ପର୍ଯ୍ୟନ୍ତ ରହିଥିଲା । ସେହିବର୍ଷ ଇଂରେଜମାନେ ତାକୁ ଏକ ଜମିଦାରୀରେ ପରିଣତ କଲେ ।

ଓଡ଼ିଶାର ବିଭିନ୍ନ ଅଞ୍ଚଳ ବିଭିନ୍ନ ସମୟରେ ଇଂରେଜ ରାଜ୍ୟଭୁକ୍ତ ହେଲା । ଶାସନର ସୁବିଧା ଦୃଷ୍ଟିରୁ ସେମାନେ ଓଡ଼ିଆଭାଷୀ ଅଞ୍ଚଳମାନଙ୍କୁ ବିଭିନ୍ନ ପ୍ରଦେଶରେ ରଖିବାରୁ ଓଡ଼ିଶାର ଘୋର କ୍ଷତି ହୋଇଥିଲା ଓ ଓଡ଼ିଆମାନଙ୍କର ଏକତା ଆସିବାପାଇଁ ବାଧାଦାନ କଲା । ଅନ୍ୟ ପ୍ରଦେଶର ଲୋକମାନେ ଭାରତର ସ୍ୱାଧୀନତାପାଇଁ ଆନ୍ଦୋଳନ କଲାବେଳେ ଓଡ଼ିଆମାନେ ଇଂରେଜମାନଙ୍କ ସାହାଯ୍ୟରେ ଓଡ଼ିଆଭାଷୀ ଅଞ୍ଚଳମାନଙ୍କୁ ମିଶାଇ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାକୁ ଆନ୍ଦୋଳନ କଲେ । ଖ୍ରୀଃ ୧୯୦୫ ରେ ବଙ୍ଗ ବିଭାଗ ହେବାବେଳେ ପଶ୍ଚିମବଙ୍ଗ, ବିହାର ଓ ଓଡ଼ିଶା ଗୋଟିଏ ପ୍ରଦେଶରେ ରହିଲା । ସେତେବେଳେ ଲର୍ଡ଼ କର୍ଜନଙ୍କ ଚେଷ୍ଟାରେ ସମ୍ବଲପୁର ଓ ଅନ୍ୟ ଛଅଟି ଗଡ଼ଜାତ ମଧ୍ୟପ୍ରଦେଶରୁ ଆସି ଓଡ଼ିଶାରେ ମିଶିଲା । ଫୁଲଝର ଓ ଝାଡ଼ଖଣ୍ଡ ପ୍ରଭୃତି ଓଡ଼ିଆଭାଷୀ ଅଞ୍ଚଳ ମଧ୍ୟପ୍ରଦେଶରେ ରହିଗଲା । ସେତେବେଳେ ମାନ୍ଦ୍ରାଜ ପ୍ରଦେଶରୁ ଓଡ଼ିଆଭାଷୀ ଅଞ୍ଚଳକୁ ଓଡ଼ିଶାରେ ମିଶାଇବାକୁ ଚେଷ୍ଟାକରି ଲର୍ଡ଼ କର୍ଜନ ବିଫଳ ହେଲେ ।

ଖ୍ରୀଃ ୧୯୦୩ ରେ ସ୍ୱର୍ଗୀୟ ମଧୁସୂଦନ କଟକରେ ଉତ୍କଳସମ୍ମିଳନୀ ସ୍ଥାପନ କରିଥିଲେ ଏବଂ ଏହାର ପ୍ରଥମ ଅଧିବେଶନରେ ମୟୂରଭଞ୍ଜର



ମହାରାଜା ସଭାପତି ହୋଇଥିଲେ । ଓଡ଼ିଆ-ଭାଷୀ ଅଞ୍ଚଳମାନଙ୍କୁ ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ କରିବା ଓ ଦେଶୀୟ ଶିଳ୍ପର ପୁନରୁଦ୍ଧାର କରିବା ଏହି ସମ୍ମିଳନୀର ଉଦ୍ଦେଶ୍ୟ ଥିଲା । ଖ୍ରୀ: ୧୯୧୨ ରେ ପୂର୍ବବଙ୍ଗ ଓ ପଶ୍ଚିମବଙ୍ଗ ମିଳିତ ହେବାରୁ ବିହାର ଓଡ଼ିଶା ଅନ୍ୟ ଗୋଟିଏ ପ୍ରଦେଶରେ ପରିଣତ ହେଲା । ଓଡ଼ିଶା ବିହାର ଓଡ଼ିଶା ପ୍ରଦେଶର ଗୋଟିଏ ବିଭାଗ ହୋଇ ରହିଲା । ସେତେବେଳେ ମଧ୍ୟ ଓଡ଼ିଆଭାଷୀ ଅଞ୍ଚଳମାନ ମାଡ୍ରାଜ, ମଧ୍ୟପ୍ରଦେଶ ଓ ବଙ୍ଗଳାରୁ ଆଣାହୋଇ ଏକ ଶାସନାଧୀନରେ ରଖାଯାଇ ନ ଥିଲା ।

ଉତ୍କଳ ସମ୍ମିଳନୀ ଖ୍ରୀ: ୧୯୨୦ ପର୍ଯ୍ୟନ୍ତ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାପାଇଁ ଆନ୍ଦୋଳନ କରି ଆସୁଥିଲେ । ପଣ୍ଡିତ ଗୋପବନ୍ଧୁଙ୍କ ଉଦ୍ୟମରେ ଖ୍ରୀ: ୧୯୨୦ରେ ସିଂହଭୂମ ଜିଲ୍ଲା ଚକ୍ରଧରପୁର ଅଧିବେଶନରେ କଂଗ୍ରେସର ସ୍ୱରାଜ୍ୟ ପ୍ରାପ୍ତି ଉତ୍କଳ ସମ୍ମିଳନୀର ଲକ୍ଷ୍ୟ ହେଲା । ତା ପରେ ଭାଷାଭିତ୍ତିରେ ପ୍ରଦେଶ ଗଠନପାଇଁ କଂଗ୍ରେସ ପ୍ରସ୍ତାବ କରିଥିଲେ । ଖ୍ରୀ: ୧୯୨୯ ରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନପାଇଁ ସୁପାରିସ୍ କରିଥିଲେ । ପାରଳାର ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ବହୁ ଯତ୍ନ କରିଥିଲେ ।

**ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ** :—ଖ୍ରୀ: ୧୯୩୫ ର ଶାସନ ଆଇନ ଫଳରେ ଖ୍ରୀ: ୧୯୩୬ ଏପ୍ରିଲ ପହିଲାଠାରୁ ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର-ପ୍ରଦେଶରେ ପରିଣତ ହେଲା । ମାଡ୍ରାଜ ପ୍ରଦେଶରୁ ଗଞ୍ଜାମ ଓ ଜୟପୁର ରାଜ୍ୟ, ମଧ୍ୟପ୍ରଦେଶରୁ ଖଡ଼ିଆଳ ଓ ପଦ୍ମପୁର ଓ ବିହାରରୁ ଓଡ଼ିଶା ବିଭାଗ

( ପୁରୀ, କଟକ, ବାଲେଶ୍ୱର, ସମ୍ବଲପୁର, ଅନୁଗୁଳ ଓ ଗଡ଼ଜାତମାନ ) ଅପି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା । ଦୁଃଖର ବିଷୟ ମାନ୍ଦ୍ରାଜରେ ମଞ୍ଜୁଷା, ଟିକାଲି ପ୍ରଭୃତି ସ୍ଥାନ, ମଧ୍ୟପ୍ରଦେଶର ଫଲ୍‌ଝର, ବସ୍ତର, ଚନ୍ଦ୍ରପୁର, ରାୟଗଡ଼, ସାରଙ୍ଗଗଡ଼, ବିନ୍ଦ୍ରାନୂଆଗଡ଼ ପ୍ରଭୃତି ଅଞ୍ଚଳ, ବିହାରରେ ସିଂହଭୂମ ଓ ବଙ୍ଗପ୍ରଦେଶରେ ମେଦିନୀପୁର ଆଦି ଓଡ଼ିଆ ଅଞ୍ଚଳ ଓଡ଼ିଶା ବାହାରେ ରହିଗଲା ।

ସାର ଜନ୍ ଅଷ୍ଟିନ୍ ହବାକ୍ ନୂତନ ଓଡ଼ିଶାର ପ୍ରଥମ ଗଭର୍ଣ୍ଣର ହେଲେ । ପ୍ରାଦେଶିକ ସ୍ୱତନ୍ତ୍ରତା ଫଳରେ ଓଡ଼ିଶା ବ୍ୟବସ୍ଥାପକ ସଭାରେ ୬୦ ଜଣ ସଭ୍ୟ ରହିଲେ । ନିର୍ବାଚନ ପରେ କଂଗ୍ରେସ ସଭ୍ୟମାନେ ବେଶୀ ଭୋଟ ପାଇଥିଲେ । ଗଭର୍ଣ୍ଣରଙ୍କ ଅତିରିକ୍ତ କ୍ଷମତା ସମ୍ପର୍କରେ କଥାବାର୍ତ୍ତା ଚାଲିଥିବାବେଳେ ପାରଳାଖେମୁଣ୍ଡିର ମହାରାଜା ଏକ ଅସ୍ଥାୟୀ ମନ୍ତ୍ରୀମଣ୍ଡଳ ଗଢ଼ିଥିଲେ । ଏହାପରେ ଓଡ଼ିଶା ବ୍ୟବସ୍ଥାପକସଭାରେ କଂଗ୍ରେସ ଦଳ ବେଶୀଥିବାରୁ ସେହି ଦଳର ନେତା ମାନ୍ୟବର ଶ୍ରୀ ବିଶ୍ୱନାଥ ଦାସ ମନ୍ତ୍ରୀମଣ୍ଡଳ ଗଠନ କରିଥିଲେ । ତାଙ୍କ ସମୟରେ ଓଡ଼ିଶାର (ପୁରୀ, କଟକ, ବାଲେଶ୍ୱର) ପ୍ରଜାସତ୍ତ୍ୱ ଆଇନର ସଂଶୋଧନ ହୋଇଥିଲା; ମଠବାଡ଼ି ଆଇନ ଓ ମହାଜନୀ ଆଇନ ଗଢ଼ା ହୋଇଥିଲା । ଦ୍ୱିତୀୟ ମହାଯୁଦ୍ଧରେ କଂଗ୍ରେସ ସହିତ ପରାମର୍ଶ ନ କରି ବଡ଼ଲାଟ ଜର୍ମାନୀ ବିରୁଦ୍ଧରେ ଭାରତ ପକ୍ଷରୁ ଯୁଦ୍ଧ ଘୋଷଣା କଲେ । ସେଥିପାଇଁ କଂଗ୍ରେସ ମନ୍ତ୍ରୀମାନେ ଖ୍ରୀଃ ୧୯୩୯ ନଭେମ୍ବର ୪ ତାରିଖରୁ ଇସ୍ତଫା ଦେଲେ । ଗଭର୍ଣ୍ଣର ନିଜ ହାତକୁ ଶାସନ କ୍ଷମତା ନେଇ ନିଜ ଇଚ୍ଛାରେ ଶାସନ ଚଳାଇଲେ ।

ଖ୍ରୀ ୧୯୪୧ ଏପ୍ରିଲ ପହିଲାରୁ ସାର୍ ହଥର୍ଣ୍ଣ ଲୁଇସ୍ ଓଡ଼ିଶାର ଲାଟ ହେଲେ । ଏହି ବର୍ଷ ନଭେମ୍ବର ମାସରେ ପାରଳାଖେମୁଣ୍ଡିର ମହାରାଜା ମିଳିତ ମନ୍ତ୍ରୀମଣ୍ଡଳ ଗଠନ କରିଥିଲେ । ତାଙ୍କ ଅମଳରେ ଉତ୍କଳ ବିଶ୍ୱ-

ବ୍ୟବସ୍ଥା ସ୍ଥଗିତ ହୋଇଥିଲା। ଅଢ଼େଇବର୍ଷ ପରେ ସେ ମନ୍ତ୍ରୀମଣ୍ଡଳ ଭାଙ୍ଗିଦିବାରୁ ଗଭର୍ଣ୍ଣର ପୁଣି ନିଜ ହାତକୁ ଶାସନଭାର ନେଲେ।

## କଂଗ୍ରେସ ମନ୍ତ୍ରୀମଣ୍ଡଳ ଓ ମାନ୍ୟବର ମହତାବ

ସାର୍ ହଥର୍ଣ୍ଣ ଲୁଇସ୍‌ଙ୍କ ପରେ ସାର୍ ଚନ୍ଦୁଲାଲ୍ ତ୍ରିବେଦୀ ଓଡ଼ିଶାର ଗଭର୍ଣ୍ଣର ହେଲେ। ତାଙ୍କ ସମୟରେ ଖ୍ରୀ: ୧୯୪୬ ଏପ୍ରିଲ୍ ୨୩ ତାରିଖରେ ଓଡ଼ିଶାରେ ଦ୍ୱିତୀୟଥର ପାଇଁ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠିତ ହେଲା। ମାନ୍ୟବର ଶ୍ରୀ ହରେକୃଷ୍ଣ ମହତାବ ପ୍ରଧାନମନ୍ତ୍ରୀ ହେଲେ। ତାଙ୍କ ମନ୍ତ୍ରୀମଣ୍ଡଳରେ ମାନ୍ୟବର ପଣ୍ଡିତ ଲିଙ୍ଗରାଜ ମିଶ୍ର ମାନ୍ୟବର ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ, ମାନ୍ୟବର ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ମାନ୍ୟବର ଶ୍ରୀ ରାଧାକୃଷ୍ଣ ବିଶ୍ୱାସରାୟ ମନ୍ତ୍ରୀ ହେଲେ। ମାନ୍ୟବର ରାଧାକୃଷ୍ଣ ବିଶ୍ୱାସରାୟ ଓ ମାନ୍ୟବର ଶ୍ରୀ ନବକୃଷ୍ଣ ଚୌଧୁରୀ ଇସ୍ତଫା ଦେବାରୁ ମାନ୍ୟବର ଶ୍ରୀ ଲାଲ୍ ରଣଜିତ ସିଂହ ବରିହା ଓ ମାନ୍ୟବର ଶ୍ରୀ ସଦାଶିବ ତ୍ରିପାଠୀ ଓ ମାନ୍ୟବର ଶ୍ରୀ ରାଜକୃଷ୍ଣ ବୋଷ ଇସ୍ତଫା ଦେଇଥିବା ମନ୍ତ୍ରୀମାନଙ୍କ ପରିବର୍ତ୍ତରେ ମନ୍ତ୍ରୀମଣ୍ଡଳରେ ସ୍ଥାନ ପାଇଅଛନ୍ତି।



ବିଶିଷ୍ଟ ଜନନାୟକ ଓ ଐତିହାସିକ ମାନ୍ୟବର ପ୍ରଧାନ ମନ୍ତ୍ରୀ ହରେକୃଷ୍ଣ ମହତାବଙ୍କ ସମୟରେ ଓଡ଼ିଶାରେ ବହୁବିଧ ଉନ୍ନତି ହୋଇଅଛି



ତାଙ୍କର ୫୦ ବର୍ଷ ପୂର୍ଣ୍ଣ ହୋଇ ୫୧ ବର୍ଷ ଆରମ୍ଭ ହେବାରୁ ଖ୍ରୀ: ୧୯୫୧ ନଭେମ୍ବର ୨୬ ତାରିଖରେ ତାଙ୍କର **ସୁବର୍ଣ୍ଣ ଜୟନ୍ତୀ** ଉତ୍ସବର ପୂର୍ବପକ୍ଷୀରେ ମହାସମାରୋହରେ ପାଳିତ ହୋଇଥିଲା । ତାଙ୍କ ସମୟରେ ଓଡ଼ିଶାରେ ପ୍ରଥମଥର ପାଇଁ ଭାରତର ଇତିହାସ କଂଗ୍ରେସ ବସିଥିଲା ।

ସାର୍ ଚନ୍ଦୁଲାଲ ତ୍ରିବେଦୀ ପଞ୍ଜାବର ଲାଟ୍ ହୋଇ ଯିବାରୁ ଡକ୍ଟର କୈଳାଶ ନାଥ କାଟ୍ଜୁ ଖ୍ରୀ: ୧୯୪୭ ଅଗଷ୍ଟ ପନ୍ଦର ତାରିଖଠାରୁ ଓଡ଼ିଶାର ଲାଟ୍ ହେଲେ । ଏହାଙ୍କ ସମୟରେ ଭାରତ ସ୍ୱାଧୀନ ହୋଇଥିବାରୁ ସ୍ୱାଧୀନତା ଉତ୍ସବ ଓଡ଼ିଶାରେ ମହାସମାରୋହରେ ପାଳିତ ହୋଇଥିଲା ଓ ଗଡ଼ଜାତସବୁ ଓଡ଼ିଶାରେ ମିଶିଥିଲା ।

ସେ ପଶ୍ଚିମ ବଙ୍ଗର ଲାଟ୍ ହୋଇ ଯିବାରୁ ଜନାବ ଆସଫ୍ ଅଲ୍ଲି ଖ୍ରୀ: ୧୯୪୮ ଜୁନ ୨୧ ତାରିଖରୁ ଓଡ଼ିଶାର ଗଭର୍ଣ୍ଣର ହୋଇଅଛନ୍ତି । ଖ୍ରୀ: ୧୯୪୮ ଜୁଲାଇ ୨୬ ତାରିଖରେ ଓଡ଼ିଶାରେ ଗୋଟିଏ ସ୍ୱତନ୍ତ୍ର ହାଇକୋର୍ଟ ସ୍ଥାପିତ ହେଲା ଓ ଖ୍ରୀ: ୧୯୪୯ ଜାନୁୟାରୀ ୧ ତାରିଖରେ ମୟୂରଭଞ୍ଜ ଓଡ଼ିଶା ସହିତ ମିଶିଲା ।

**ଗଡ଼ଜାତ ମିଶ୍ରଣ** :—ଇଂରେଜ ସରକାର ଗଡ଼ଜାତ ରାଜାମାନଙ୍କର କ୍ଷମତା ବଢ଼ାଇ ଦେଇଥିଲେ । ମୋଗଲବନ୍ଦୀଠାରୁ ଗଡ଼ଜାତଗୁଡ଼ିକ

ଅଲଗା ରହିଲା । ଗଡ଼ଜାତର ଶାସନ ମୋଗଲବନ୍ଦୀ ଶାସନଠାରୁ ଅଲଗା ହେବାରୁ ଗଡ଼ଜାତର ରାଜାମାନେ ପ୍ରଜାମାନଙ୍କ ଉପରେ ଯଥେଷ୍ଟ ଅତ୍ୟାଚାର କଲେ । ଖ୍ରୀ: ୧୯୩୭ରେ ମୋଗଲବନ୍ଦୀରେ ଲୋକପ୍ରତିନିଧି ଶାସନ ହେବାରୁ ଲୋକମାନେ ସୁଶାସନ ପାଇଲେ । ଏହା ଦେଖି ଗଡ଼ଜାତର ଲୋକମାନେ ସେଠାରେ ଲୋକ ପ୍ରତିନିଧି ଶାସନ ପ୍ରତିଷ୍ଠା କରିବାପାଇଁ ପ୍ରଜାମଣ୍ଡଳ ଆନ୍ଦୋଳନ କଲେ । ଗଡ଼ଜାତର ରାଜାମାନେ ନିଷ୍ଠୁରଭାବରେ ଏହି ଆନ୍ଦୋଳନକୁ ଦବାଇ ଦେଇଥିଲେ । ଖ୍ରୀ: ୧୯୪୬ ରେ ବ୍ରିଟିଶ ମନ୍ତ୍ରୀ ପରିଷଦ ମିଶନ ଆଗରେ ମାନ୍ୟବର ଶ୍ରୀ ହରେକୃଷ୍ଣ ମହତାବ ଗଡ଼ଜାତଗୁଡ଼ିକୁ ଓଡ଼ିଶା ସହିତ ମିଶାଇବା ପାଇଁ ଦାବି କରିଥିଲେ । ତାଙ୍କ ଚେଷ୍ଟାରେ ଖ୍ରୀ: ୧୯୪୭ ଡିସେମ୍ବର ୧୪ ତାରିଖରେ ଭାରତର ଉପପ୍ରଧାନ ମନ୍ତ୍ରୀ ମାନ୍ୟବର ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଗଡ଼ଜାତଗୁଡ଼ିକୁ ଓଡ଼ିଶାରେ ମିଶାଇବା ପାଇଁ କଟକ ଆସିଥିଲେ । କଟକର ରାଜବାଟୀରେ ଗଡ଼ଜାତର ରାଜାମାନେ ଗୋଟିଏ ସମ୍ମିଳନୀରେ ଉପସ୍ଥିତ ହୋଇ ଗଡ଼ଜାତଗୁଡ଼ିକୁ ଓଡ଼ିଶା ସହିତ ମିଶାଇବାପାଇଁ ଚୁକ୍ତିପତ୍ରରେ ସ୍ୱେଚ୍ଛାରେ ସ୍ୱାକ୍ଷର କରିଥିଲେ ।



ମୟୂରଭଞ୍ଜ ଛଡ଼ା ୨୫ଟି ଗଡ଼ଜାତ ଓଡ଼ିଶା ସହିତ ମିଶିଲା । ପାଞ୍ଚଶହ ବର୍ଷ ଅଲଗା ଅଲଗା ରହି ମୋଗଲବନ୍ଦୀ ଓ ଗଡ଼ଜାତ ଏକାଠି ହେଲା । ଶାସନର ସୁବିଧାପାଇଁ ଷଡ଼େଇକଳା ଓ

ଖରସୁଆଁଙ୍କୁ ଭାରତ ସରକାର ଖ୍ରୀ: ୧୯୪୮ ମେ ମାସ ୧୯ ତାରିଖରେ ବିହାରରେ ମିଶାଇଦେଲେ । ମୟୂରଭଞ୍ଜ ଖ୍ରୀ: ୧୯୪୯ ଜାନୁୟାରୀ ୧ ତାରିଖରେ ଓଡ଼ିଶା ସହିତ ମିଶିଲା । ବର୍ତ୍ତମାନ ଓଡ଼ିଶାରେ ନିମ୍ନଲିଖିତ ଗଡ଼ଜାତମାନ ମିଶିଅଛନ୍ତି (୧) ନୀଳଗିରି (୨) କେନ୍ଦୁଝର (୩) ଢେଙ୍କାନାଳ (୪) ତାଳଚେର (୫) ବଣାଇ (୬) ବାମଣ୍ଡା (୭) ରେଢ଼ାଖୋଲ (୮)




ଆଠମଲ୍ଲିକ (୯) ସୋନପୁର (୧୦) ବୌଦ୍ଧ (୧୧) ଗାଙ୍ଗପୁର (୧୨) ପାଟଣା (୧୩) କଳାହାଣ୍ଡି (୧୪) ପାଲ୍ଲହଡ଼ା (୧୫) ଦଶପଲ୍ଲା (୧୬) ହିନ୍ଦୋଳ

(୧୭) ନୟାଗଡ଼ (୧୮) ବଡ଼ମ୍ବା (୧୯) ନରସିଂହପୁର (୨୦) ରଣପୁର (୨୧) ଅଠଗଡ଼ (୨୨) ତିଗିରିଆ (୨୩) ଖଣ୍ଡପଡ଼ା (୨୪) ମୟୂରଭଞ୍ଜ ।

**ନୂତନ ଓଡ଼ିଶାର ଜିଲ୍ଲା** :—ବର୍ତ୍ତମାନ ଓଡ଼ିଶା ୧୩ଟି ଜିଲ୍ଲାରେ ବିଭକ୍ତ ହୋଇଛି :—(୧) ପୁରୀ, (୨) କଟକ (୩) ବାଲେଶ୍ୱର (୪) ସମ୍ବଲପୁର (୫) ଗଞ୍ଜାମ (୬) କୋରାପୁଟ (୭) କେନ୍ଦୁଝର (୮) ସୁନ୍ଦରଗଡ଼ (୯) ବଲାଙ୍ଗୀର (୧୦) ଫୁଲବାଣୀ (୧୧) ଢେଙ୍କାନାଳ (୧୨) ମୟୂରଭଞ୍ଜ (୧୩) କଳାହାଣ୍ଡି ।

**ନୂତନ ବ୍ୟବସ୍ଥାପକ ସଭା** :—ନୂତନ ଜିଲ୍ଲାମାନ ସୃଷ୍ଟିହେବା ଫଳରେ ଓଡ଼ିଶାର ବ୍ୟବସ୍ଥାପକସଭାରେ ୬୦ ଜଣ ସଭ୍ୟ ପରିବର୍ତ୍ତେ ୯୧ ଜଣ ସଭ୍ୟ ହୋଇଅଛନ୍ତି । ଏହି ସଭ୍ୟମାନଙ୍କର ପ୍ରଥମ ବୈଠକ ଓଡ଼ିଶାର ନୂଆ ରାଜଧାନୀ ଭୁବନେଶ୍ୱରରେ ଖ୍ରୀ: ୧୯୪୯ ସେପ୍ଟେମ୍ବର ମାସରେ ବସିଥିଲା ।

## ଅନୁଶୀଳନୀ

୧ । ନିମ୍ନଲିଖିତ ବିଷୟ ସମ୍ବନ୍ଧରେ ଟିପ୍ପଣୀ ଲେଖ :—
ଇଲବର୍ଟ ବିଲ୍, ବଙ୍ଗବିଚ୍ଛେଦ, ଜାଲିଆନା ବାଗ୍ ହତ୍ୟାକାଣ୍ଡ, ରୋଲଟ ଆଇନ, ଲବଣ ସତ୍ୟାଗ୍ରହ, ପ୍ରାଦେଶିକ ସ୍ୱତନ୍ତ୍ରତା, କ୍ରିପ୍ସ୍ ପ୍ରସ୍ତାବ, ଶାସନ ବିଧାୟକ ସଭା, ଗଣଭୋଟ ।

୨ । ନିମ୍ନଲିଖିତ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ :—

(କ) ଇଂରେଜମାନଙ୍କ ଅମଳରେ କେବେ ଭାରତରେ ମ୍ୟୁନିସିପାଲିଟି ଓ ଜିଲ୍ଲାବୋର୍ଡମାନ ଗଠନ କରାଗଲା ?

(ଖ) ଭାରତ ଜାତୀୟ କଂଗ୍ରେସର ପ୍ରଥମ ଅଧିବେଶନ କେବେ କେଉଁଠାରେ ହୋଇଥିଲା ?

(ଗ) ଉତ୍କଳ ସମ୍ମିଳନୀ କେବେ ଗଠିତ ହୋଇଥିଲା ?

(ଘ) ଗଡ଼ଜାତମାନ କେବେ ଓଡ଼ିଶାର ମୋଗଲବନ୍ଦୀ ଅଞ୍ଚଳ ସଙ୍ଗେ ମିଶିଥିଲେ ?

(ଙ) ମୟୂରଭଞ୍ଜ କେବେ ଓଡ଼ିଶାରେ ମିଶିଥିଲା ?

(ଚ) ଓଡ଼ିଶାର ବ୍ୟବସ୍ଥା ସଭାରେ ବର୍ତ୍ତମାନ କେତେଜଣ ସଭ୍ୟ ଅଛନ୍ତି ?

(ଛ) ଖ୍ରୀଃ ୧୯୪୮ ଜାନୁୟାରୀ ୩୦ ତାରିଖରେ କେଉଁ ପ୍ରଧାନ ଘଟଣା ଘଟିଥିଲା ?

୨। ମର୍ଲେ-ମିଣ୍ଟୋ ଶାସନ ସଂସ୍କାର ବିଷୟରେ ଯାହା ଜାଣ ଲେଖ ।

୩। ଖ୍ରୀଃ ୧୯୩୫ ରେ ଭାରତ ଆଇନ ଫଳରେ ପ୍ରଦେଶମାନଙ୍କର ଶାସନର କି କି ପରିବର୍ତ୍ତନ ଘଟିଲା ?

୪। ଖ୍ରୀଃ ୧୯୪୨ର ଅଗଷ୍ଟ ଆନ୍ଦୋଳନ ବିଷୟରେ ଯାହାଜାଣ ଲେଖ । ଭାରତ ସ୍ୱାଧୀନତା ଆଇନ ଫଳରେ ଭାରତରେ କି କି ପରିବର୍ତ୍ତନ ଘଟିଥିଲା ?

୬। ନିମ୍ନଲିଖିତ ଘଟଣାଗୁଡ଼ିକୁ କାଳର କ୍ରମ ଅନୁସାରେ ସଜାଇ ରଖ:—ମହାତ୍ମା ଗାନ୍ଧିଙ୍କ ହତ୍ୟା, ମୟୂରଭଞ୍ଜର ଓଡ଼ିଶା ସହିତ ମିଶ୍ରଣ, ସରାଇକଲା ଓ ଖରସୁଆଁର ବିହାର ସହିତ ମିଶ୍ରଣ, ଭୁବନେଶ୍ୱରରେ ଓଡ଼ିଶା ବ୍ୟବସ୍ଥା ସଭାର ପ୍ରଥମ ବୈଠକ, ଓଡ଼ିଶାରେ ହାଇକୋର୍ଟ ସ୍ଥାପନ, ଓଡ଼ିଶା ବିଶ୍ୱବିଦ୍ୟାଳୟ ସ୍ଥାପନ, ପ୍ରଥମ କଂଗ୍ରେସ ମନ୍ତ୍ରୀମଣ୍ଡଳର ଇସ୍ତଫା ପ୍ରଦାନ ।

---

ମୁଦ୍ରାକର—ମହମ୍ମଦ ଅବ୍ଦୁଲ ହାଦୀ, ଲକ୍ଷ୍ମୀନାରାୟଣ ପ୍ରେସ, କଟକ, ୧୯୫୦